ଭାରତ ପ୍ରଦୀପ

# ମହାବୀର

ଶ୍ରୀ ଭଗୀରଥୀ ନେପାକ

ସୁଧାଂଶୁ ପ୍ରକାଶନ
ଝାଞ୍ଜିରିମଙ୍ଗଳା, କଟକ-୭୫୩୦୦୯

# ଭାରତ ପ୍ରଦୀପ
# ମହାବୀର



ଲେଖକ :

**ଶ୍ରୀ ଭଗୀରଥୀ ନେପାକ**



ପ୍ରକାଶକ :

**ସୁଧାଂଶୁ ପ୍ରକାଶନ**
କଟକ-୯



ପରିବେଷକ :

**ଶ୍ରୀନିବାସ ଗୁରୁ**
ଗୁରୁଜୀ ବୁକ୍ ଷ୍ଟଲ
କଟକ-୯



ପ୍ରଥମ ପ୍ରକାଶ :

**୧୯୮୫**



ମୁଦ୍ରଣ :

**ପ୍ରକାଶ ପ୍ରିଣ୍ଟର୍ସ**
କଟକ-୯



**ମୂଲ୍ୟ : ଟ [illegible]-୦୦**

# ମହାବୀର

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଭାରତ ଇତିହାସରେ ଏକ ସ୍ମରଣୀୟ ସମୟ । କାରଣ ସେହି ଶତାବ୍ଦୀରେ ଦୁଇ ଜଣ ଇତିହାସ ପ୍ରସିଦ୍ଧ ମହାପୁରୁଷ ଜନ୍ମଲାଭ କରିଥିଲେ । ସେମାନଙ୍କ ନାମ ହେଲା, ମହାବୀର ବର୍ଦ୍ଧମାନ ଓ ଗୌତମ ବୁଦ୍ଧ । ଏମାନେ ସେମାନଙ୍କ ସମୟର ଭାରତରେ ସାମାଜିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲେ । କେବଳ ଭାରତ ନୁହେଁ, ପୃଥିବୀର ବହୁ ଦେଶ ଏମାନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲା ।

ଏହି ଦୁଇ ମହାପୁରୁଷଙ୍କ ମଧ୍ୟରୁ ମହାବୀର ବର୍ଦ୍ଧମାନ ଜୈନଧର୍ମ ଓ ଗୌତମ ବୁଦ୍ଧ ବୌଦ୍ଧଧର୍ମର ପ୍ରତିଷ୍ଠା କରିଥିଲେ ।

ଐତିହାସିକମାନେ କହନ୍ତି, ଜୈନଧର୍ମ ବୌଦ୍ଧଧର୍ମର ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିଲା ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବୈଦିକ ଧର୍ମ ଅତ୍ୟନ୍ତ ଜଟିଳ ହୋଇ ଯାଇଥିଲା । ଧର୍ମ ନାମରେ କୁ-ସଂସ୍କାର ଓ ଅନ୍ଧ ବିଶ୍ୱାସ ପ୍ରଚଳିତ ହେଲା । ଯାଗଯଜ୍ଞ, ବଳି ଓ ନାନା-

ପ୍ରକାର କର୍ମକାଣ୍ଡ ଭିତରେ ଧର୍ମର ଅସଲ ଉଦ୍ଦେଶ୍ୟ ପଣ୍ଡହେଲା । ଧର୍ମ ନାମରେ ଜୀବହିଂସା ବ୍ୟାପିଗଲା । ଉଚ୍ଚ ଜାତି ବୋଲିଉ-ଥିବା ବ୍ରାହ୍ମଣମାନେ ସମାଜରେ ଆଧିପତ୍ୟ ବିସ୍ତାର କଲେ । ସେମାନେ ନୀଚ ଜାତିର ଲୋକଙ୍କୁ ଘୃଣା କଲେ । ଜାତିପ୍ରଥା ଏକ ନିଷ୍ଠୁର ନିୟମରେ ପରିଣତ ହେଲା । ଜନସାଧାରଣ ନିର୍ଯ୍ୟାତନା ଭୋଗକଲେ ।

ଧର୍ମ ସମାଜର ଏହିପରି ଅଧୋଗତିବେଳେ ସଂସ୍କାର ପାଇଁ ଆନ୍ଦୋଳନ ସୃଷ୍ଟି ହେଲା । ସେହି ସଂସ୍କାରମୂଳକ ଆନ୍ଦୋଳନ ମଧ୍ୟରୁ ଜୈନଧର୍ମ ଓ ବୌଦ୍ଧଧର୍ମର ଉତ୍ପତ୍ତି ଘଟିଲା ।

ମହାବୀର ବର୍ଦ୍ଧମାନଙ୍କୁ ଜୈନଧର୍ମର ପ୍ରତିଷ୍ଠାତା ବୋଲି କୁହାଗଲେ ମଧ୍ୟ ତାଙ୍କ ପୂର୍ବରୁ ୨୪ ଜଣ ତୀର୍ଥଙ୍କର ବା ଧର୍ମ ପଥ ପ୍ରଦର୍ଶକ ଜନ୍ମଗ୍ରହଣ କରିଥିଲେ । ମହାବୀର ବର୍ଦ୍ଧମାନ ହେଉଛନ୍ତି ସେହି ତୀର୍ଥଙ୍କର ମାନଙ୍କ ମଧ୍ୟରେ ସର୍ବଶେଷ ଓ ଶ୍ରେଷ୍ଠ ତୀର୍ଥଙ୍କର ।

ମହାବୀର ବର୍ଦ୍ଧମାନ ଅହିଂସାର ଅବତାର ଥିଲେ । ସକଳ ମାନବ ଓ ସକଳ ଜୀବଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ ଏବଂ ସମସ୍ତଙ୍କର ସେବା କରିବାକୁ ଆଗ୍ରହୀ ଥିଲେ । ସେ ସତ୍ୟ, ଅହିଂସା ଓ ପ୍ରେମର ପୂଜାରି ଥିଲେ ଓ ଏହା ଜୀବନରେ ଆଚରଣ କରିବାକୁ ଉପଦେଶ ଦେଉଥିଲେ । ସମଗ୍ର ସଂସାରରେ ସେ ତ୍ୟାଗର ପରିପୂର୍ଣ୍ଣ ଅବତାର ଭାବରେ ଖ୍ୟାତ ଥିଲେ । ତାଙ୍କ ସାଧନା ଓ ଉପଦେଶରେ ମାନବ ଜୀବନର ଶ୍ରେଷ୍ଠ ପରାକାଷ୍ଠା ପ୍ରକାଶ ଲାଭ କରିଥିଲା ।

# ପିତାମାତା ଓ ଜନ୍ମ ବିବରଣ

ଗବେଷକମାନେ କହନ୍ତି, ବୌଦ୍ଧଧର୍ମର ପ୍ରତିଷ୍ଠାତା ବୁଦ୍ଧଦେବଙ୍କ ପୂର୍ବରୁ ମହାବୀର ବର୍ଦ୍ଧମାନ ଜନ୍ମଗ୍ରହଣ କରିଥିଲେ । ବୌଦ୍ଧଧର୍ମ ଗ୍ରନ୍ଥମାନଙ୍କରେ ବର୍ଦ୍ଧମାନଙ୍କୁ 'ନଟପୁତ୍ର' କୁହାଯାଇଛି ।

ମହାବୀରଙ୍କ ପିତାଙ୍କ ନାମ 'ସିଦ୍ଧାର୍ଥ' । ସେ ବିହାରର 'କୁଣ୍ଡପୁର' ରାଜ୍ୟର ରାଜା ଥିଲେ । ସେ ଜାତିରେ କ୍ଷତ୍ରିୟ ଥିଲେ ।

ସିଦ୍ଧାର୍ଥ 'ତ୍ରିଶଳା'ଙ୍କୁ ବିବାହ କରିଥିଲେ ।

ରାଣୀ ତ୍ରିଶଳାଙ୍କ ଗର୍ଭରୁ ଶୁଭ ଲଗ୍ନରେ ମହାବୀର ବର୍ଦ୍ଧମାନ ଜନ୍ମଗ୍ରହଣ କରିଥିଲେ ।

ମହାବୀର ବର୍ଦ୍ଧମାନଙ୍କ ଜନ୍ମ ସମ୍ପର୍କରେ ବହୁ କାହାଣୀ ଓ କିମ୍ବଦନ୍ତୀ ପ୍ରଚଳିତ ଅଛି ।

'ଅରିଷ୍ଟନେମୀ ପୁରାଣ' ଅନ୍ତର୍ଗତ 'ଜୈନ-ହରିବଂଶ'ରେ ଲେଖାଯାଇଛି ଯେ, ରାଣୀ ତ୍ରିଶଳା ଯେବେ ଶୋଇଥିବାବେଳେ ଷୋହଳଟି ଶୁଭ ସ୍ୱପ୍ନ ଦେଖିଥିଲେ । ତହିଁରେ ସେ ହାତୀ, ସିଂହ, ପଦ୍ମପୁଷ୍ପ, ଲକ୍ଷ୍ମୀ ଆଦିଙ୍କୁ ଦେଖିଥିଲେ ।

ପରଦ୍ଦିନ ରାଣୀ ତ୍ରିଶଳା ସ୍ୱାମୀଙ୍କୁ ସ୍ୱପ୍ନକଥା କହିବାରୁ ସେ ରାଜ୍ୟର ଜ୍ୟୋତିଷମାନଙ୍କୁ ଡକାଇ ରାଣୀଙ୍କ ସ୍ୱପ୍ନର ତାତ୍ପର୍ଯ୍ୟ ସମ୍ପର୍କରେ ପ୍ରଶ୍ନ କରିଥିଲେ । ଜ୍ୟୋତିଷମାନେ ସବୁକଥା ଶୁଣି ତାହା ବିଚାର କରି କହିଲେ ଯେ, ଅଚିରେ ରାଣୀଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ଲାଭହେବ । ସେହି ଦେବପୁତ୍ର ପୃଥିବୀକୁ ଶୁଭ ସମ୍ବାଦ ନେଇ ଆସିବ । ସେ ମାନବ ସମାଜର ମୁକ୍ତି ପାଇଁ ନୂତନ ଧର୍ମ ପ୍ରଚାର କରିବ ଓ ସଂସାରରେ ଖ୍ୟାତି ଅର୍ଜନ କରିବ ।

ଏହାପରେ ତ୍ରିଶଳା ଗର୍ଭଧାରଣ କଲେ । ମହାବୀର ଆଷାଢ଼ ମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ମାତୃଗର୍ଭରେ ସ୍ଥାନ ଲାଭକଲେ । ନଅ ମାସ ଆଠ ଦିନ ମାତୃଗର୍ଭରେ ରହିବା ପରେ ଧରାପୃଷ୍ଠକୁ ଅବତରଣ କଲେ ।

ରାଜା ସିଦ୍ଧାର୍ଥଙ୍କ ଔରସରୁ ତ୍ରିଶଳାଙ୍କ ଗର୍ଭରୁ ଯେଉଁ ସନ୍ତାନ ଜନ୍ମଲାଭ କଲା, ତା'ର ନାମ ରଖାଗଲା ବର୍ଦ୍ଧମାନ । ବର୍ଦ୍ଧମାନ ପୃଥିବୀର ଦୁଃଖ ଲାଘବ ପାଇଁ ଜନ୍ମଗ୍ରହଣ କଲେ ।

ଏହାପରେ ଶକ୍ରେନ୍ଦ୍ର ବର୍ଦ୍ଧମାନଙ୍କ ଜନ୍ମଭୂମି କୁଣ୍ଡ-ପୁରରେ ସ୍ୱର୍ଗର ଦେବତାମାନେ ଆସି ଉପସ୍ଥିତ ହେଲେ । କଥିତ ଅଛି, ଦେବରାଜ ଇନ୍ଦ୍ର ବର୍ଦ୍ଧମାନଙ୍କୁ ଐରାବତ ହସ୍ତୀ ଉପରେ ବସାଇ ମନ୍ଦର ପର୍ବତକୁ ନେଇଗଲେ । ସେଠାରେ ରମଣୀୟ ପାଣ୍ଡୁକା ବନରେ ପ୍ରସିଦ୍ଧ ସିଂହାସନରେ ବସାଇଲେ । ଦେବଗଣ କ୍ଷୀର ସାଗର ଜଳରେ ତାଙ୍କର ଅଭିଷେକ କଲେ । ତା'ପରେ ତାଙ୍କୁ ଦିବ୍ୟ ବସନ ଭୂଷଣରେ ଅଳଂକୃତ କରି

ପୂଜା କଲେ । ଏହାପରେ ତାଙ୍କୁ ନେଇଯାଇ ତାଙ୍କ ମାତା ତ୍ରିଶଳାଙ୍କ କୋଳରେ ଛାଡ଼ି ଦେଇ ଆସିଲେ । ସେତେବେଳେ ଅର୍ଦ୍ଧ ରାତ୍ରି ସମୟ ହୋଇଥାଏ । ତା'ପରେ ଯାଇ ଦେବରାଜ ଇନ୍ଦ୍ର ଓ ଅନ୍ୟମାନେ ସ୍ୱର୍ଗଧାମକୁ ଫେରିଗଲେ ।

ଇନ୍ଦ୍ର ତାଙ୍କୁ 'ବର୍ଦ୍ଧମାନ' ନାମରେ ସ୍ତବ କରିଥିବାରୁ ବାଲ୍ୟକାଳରେ ସେ ମହାବୀର ବର୍ଦ୍ଧମାନ ନାମରେ ପରିଚିତ ହେଲେ ।

ତ୍ରିଶଳାଙ୍କ ପୁତ୍ର ସନ୍ତାନ ଲାଭ କରିଥିବା ସମ୍ବାଦ ଗୃହୁଁ ଗୃହୁଁ ରାଜ୍ୟସାରା ପ୍ରଚାରିତ ହୋଇଗଲା । ଏହା ଶୁଣି ରାଜା ସିଦ୍ଧାର୍ଥଙ୍କଠାରୁ ଆରମ୍ଭ କରି ଦରିଦ୍ର ଜନସାଧାରଣ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଦର୍ଶନ କରିବାକୁ ଆସିଲେ ଓ ତାଙ୍କୁ ଦେଖି ଆନନ୍ଦ ପ୍ରକାଶ କଲେ । ସମସ୍ତେ ତାଙ୍କର ସେବା କରି ପରମ ତୃପ୍ତି ଲାଭ କଲେ ।

## ବର୍ଦ୍ଧମାନଙ୍କ ବାଲ୍ୟକାଳ

ବର୍ଦ୍ଧମାନଙ୍କ ବାଲ୍ୟକାଳ ଅତି ସୁଖ ଓ ଆନନ୍ଦରେ ଅତିବାହିତ ହେବାକୁ ଲାଗିଲା । ରାଜପୁତ୍ର ହେତୁ ସେ ସକଳ ପ୍ରକାର ସୁଖ ସୁବିଧା ଲାଭ କରିଥିଲେ । ପିତା, ମାତା ଓ ଦାସ, ଦାସୀଙ୍କ ଗହଣରେ ସେ ଖୁବ୍ ଆରାମରେ ବଢ଼ିବାକୁ ଲାଗିଲେ ।

ଜନ୍ମ ହେବାର ଅଳ୍ପକାଳ ପରେ ସେ ଅଲୌକିକ ଶକ୍ତି ଓ ସାହସର ଅଧିକାରୀ ହୋଇଥିଲେ । ନିଜର ବାହୁ ବଳରେ ସେ ସାଥିମାନଙ୍କୁ ଅକ୍ଳେଶରେ ହରାଇ ଦେଉଥିଲେ ।

କଥିତ ଅଛି, ଦିନେ ରାଜଉଦ୍ୟାନରେ ଖେଳୁଥିଲାବେଳେ ଏକ ପାଗଳା ହାତୀକୁ ଅତ୍‌କ୍ଷଣରେ କାବୁ କରି ପାରିଥିଲେ । ପାଗଳା ହାତୀର ଆକ୍ରମଣରେ ଜନସାଧାରଣ ଭୟଭୀତ ହୋଇ ଏଣେତେଣେ ଦଉଡ଼ି ପଳାଇ ଯାଉଥିଲାବେଳେ, ସେ ତା'ର ଦାନ୍ତକୁ ଜାବୁଡ଼ି ଧରି ଅନାୟାସରେ ତା'ର ପିଠି ଉପରକୁ ଉଠି ଯାଇଥିଲେ ଓ ଅଙ୍କୁଶରେ ତାକୁ ଆୟତ୍ତ କରି ନେଇଥିଲେ ।

## ବିବାହ

ଯୁବକ ବୟସରେ ବର୍ଦ୍ଧମାନ 'ଯଶୋଦା' ନାମ୍ନୀ ଏକ ପରମା ସୁନ୍ଦରୀ ରମଣୀଙ୍କୁ ବିବାହ କଲେ । ଏହାପରେ କିଛିଦିନ ପାଇଁ ସେ ସୁନ୍ଦରୀ ଯଶୋଦାଙ୍କ ପ୍ରେମ ଓ ମମତାର ବନ୍ଧନରେ ବାନ୍ଧି ହୋଇଗଲେ । ଯଥା ସମୟରେ ସେ 'ପ୍ରିୟଦର୍ଶିନୀ' ନାମ୍ନୀ କନ୍ୟାର ପିତା ହେଲେ ।

ଏହାପରେ ସଂସାର ପ୍ରତି ଆସକ୍ତି ଆସିବା ପରିବର୍ତ୍ତେ ତାଙ୍କ ମନରେ ବୈରାଗ୍ୟ ଦେଖାଦେଲା । ପତ୍ନୀ, କନ୍ୟା ଓ ପରିବାର ମେଳରେ ସେ ନିଶ୍ଚିନ୍ତ ଜୀବନଯାପନ କରି ପାରିଲେ ନାହିଁ ।

## ବୈରାଗ୍ୟ

ବର୍ଦ୍ଧମାନ ସାମାଜିକ ପରିସ୍ଥିତି ଦେଖି ବିବ୍ରତ ହୋଇ ପଡ଼ିଲେ । ସମାଜର ଅଧୋଗତି ଦେଖି ତାଙ୍କ ମନ ବ୍ୟସ୍ତ ହେଲା ।

ଭୋଗବିଳାସରେ ଜୀବନଯାପନ କରିବାକୁ ତାଙ୍କର ସକଳ ପ୍ରକାର ସୁବିଧା ସୁଯୋଗ ଥିବା ସତ୍ତ୍ୱେ, ସେ ସଂସାର ପ୍ରତି ବିମୁଖ ହେଲେ । ସାଂସାରିକ ଭୋଗବିଳାସ ପ୍ରତି ତାଙ୍କ ମନ ବଳିଲା ନାହିଁ ।

ଦିନେ ରାତିରେ ହଠାତ୍ ତାଙ୍କର ଜ୍ଞାନ ଉଦୟ ହେଲା । ସେତେବେଳେ ତାଙ୍କର ବୟସ ତିରିଶି ବର୍ଷ । ସେ ହଠାତ୍ ପତ୍ନୀ, କନ୍ୟା, ପରିବାରବର୍ଗ ତଥା ବାସଗୃହ ଛାଡ଼ି ବନ ଅଭିମୁଖେ ଯାତ୍ରାକଲେ । ଜୈନ ଗ୍ରନ୍ଥରୁ ଜଣାଯାଏ, ବର୍ଦ୍ଧମାନ ମାର୍ଗଶୀର ମାସ, କୃଷ୍ଣପକ୍ଷ, ଦଶମୀ ଦିନ ବନରେ ପ୍ରବେଶ କରିଥିଲେ ।

ବନରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ସେ ନିଜର ପିନ୍ଧା ବାସ ଓ ଅଙ୍ଗ ଭୂଷଣ ସବୁ ଚୋଟି ଚୋଟି କରି କାଢ଼ି ତଳେ ପକାଇ ଦେଇଥିଲେ । ସେ ନିଜ ମସ୍ତକର କେଶ ମଧ୍ୟ କାଟିପକାଇ ଫିଙ୍ଗି ଦେଇଥିଲେ ।

## ତପସ୍ୟା

ବନରେ ପ୍ରବେଶ କରି ସେ କଠୋର ତପସ୍ୟାରେ ନିମଗ୍ନ ହେଲେ । ତପସ୍ୟା ସମୟରେ ସେ ଜଳ ସୁଦ୍ଧା ଗ୍ରହଣ କରୁ ନ ଥିଲେ । ଶୀତ, ଖରା କିଛିହେଲେ ତାଙ୍କୁ ବାଧିଲା ନାହିଁ ।

ବର୍ଦ୍ଧମାନ ଦୀର୍ଘ ବାର ବର୍ଷ କାଳ ତପସ୍ୟା କଲେ ।

ସେତେବେଳେ ତାଙ୍କ ପାଖରେ କିଛି ନ ଥିଲା । ସେ ସର୍ବହରା ଭିକ୍ଷୁକ ସାଜିଥିଲେ ।

ଜୈନ ଶାସ୍ତ୍ରରେ ଲେଖାଅଛି—"କେବଳ ଜ୍ଞାନ ପ୍ରାପ୍ତ ପୁରୁଷ ଆଗତ ଭବିଷ୍ୟତ ବିଷୟ ଜାଣି ପାରନ୍ତି । ସେମାନେ ପୃଥିବୀର ପ୍ରାଣୀମାନଙ୍କ ଅବସ୍ଥା ଉତ୍ତମ ରୂପେ ଉପଲବ୍ଧି କରି ପାରନ୍ତି ।"

ବର୍ଦ୍ଧମାନ ବାର ବର୍ଷ କାଳ ତପସ୍ୟା କରିବା ପରେ ପ୍ରବର୍ଯ୍ୟାରେ ବାହାରି ପଡ଼ିଲେ । ଯାଉଁ ଯାଉଁ 'ଋଜୁକୁଳା' ନଦୀ ତଟରେ ପହଞ୍ଚିଲେ । ଋଜୁକୁଳା ନଦୀ ତଟରେ ଥିବା 'କୁମ୍ଭିକ' ଗ୍ରାମରେ ପହଞ୍ଚି ସେ ଅନଶନ ଯୋଗ ଆରମ୍ଭ କରିଦେଲେ ।

ବୈଶାଖ ମାସ, ଶୁକ୍ଳ ପକ୍ଷ, ଦଶମୀ ଦିନ ସେ ଜାତି କର୍ମକୁ ସଂହାର କରି 'କେବଳ ଜ୍ଞାନ' ପ୍ରାପ୍ତ ହେଲେ ।

ବର୍ଦ୍ଧମାନ 'କେବଳ ଜ୍ଞାନ' ପ୍ରାପ୍ତ ହେବା ପରେ ସ୍ୱର୍ଗ-ସ୍ୱରମାନଙ୍କର ଆସନ ଟଳମଳ ହେଲା । ସମସ୍ତେ ତାଙ୍କ ମହିମା ସ୍ୱୀକାର କଲେ ।

## ମୌନବ୍ରତ

'କେବଳ ଜ୍ଞାନ' ପ୍ରାପ୍ତ ବର୍ଦ୍ଧମାନ ପୁଣିଥରେ ମୌନବ୍ରତ ଧାରଣ କଲେ । ସେହି ମୌନବ୍ରତ ଧାରଣ କରି ଷଠ୍‌ଷଠି (୬୬) ଦିବସ ପର୍ଯ୍ୟନ୍ତ ପର୍ଯ୍ୟଟନ କରିବା ପରେ ସେ ବିଖ୍ୟାତ ନଗର 'ରାଜଗୃହ ପୁର'ରେ ଉପସ୍ଥିତ ହେଲେ । ଏଠାରେ ସେ ଏକ ଶୈଳ ଉପରେ ବାସ କରିବାକୁ ଲାଗିଲେ ।

ବର୍ଦ୍ଧମାନ ଶୈଳ ଉପରେ ବାସ କଲାବେଳେ ସୁର, ନର, ଅସୁର ପ୍ରଭୃତି ସମସ୍ତେ ଆସି ତାଙ୍କୁ ଦର୍ଶନ କଲେ ।

ସେହି ସ୍ଥାନରେ ତିନୋଟି ରତ୍ନମୟ ପ୍ରାଚୀର ଏବଂ ଏକ ଯୋଜନ ପର୍ଯ୍ୟନ୍ତ ବିସ୍ତୃତ ବିରାଟ ଗୃହ ନିର୍ମାଣ କରାଗଲା । ଏ ଗୃହକୁ ଦ୍ୱାଦଶ ଭାଗରେ ବିଭକ୍ତ କରାଗଲା । ଏହି ଗୃହର ଭିତ୍ତି ସ୍ଫଟିକ ପ୍ରସ୍ତରରେ ନିର୍ମିତ ହୋଇଥିଲା । ବର୍ଦ୍ଧମାନ ସେହି ଗୃହରେ ରହିବାକୁ ଲାଗିଲେ ।

## ରାଜ ଗୃହର ସ୍ଫଟିକ ଗୃହରେ ବର୍ଦ୍ଧମାନ

ଜୈନଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ଦେବରାଜ ଇନ୍ଦ୍ର ସିଦ୍ଧ ବର୍ଦ୍ଧମାନଙ୍କୁ ଦର୍ଶନ କରିବାକୁ ଅଗ୍ନି, ବାୟୁ ପ୍ରଭୃତି ଦେବଗଣଙ୍କୁ ମର୍ତ୍ତ୍ୟଧାମକୁ ପଠାଇଥିଲେ । ସେହି ଦେବତାମାନେ ଆସି ବର୍ଦ୍ଧମାନଙ୍କୁ ଏହି ସ୍ଫଟିକ ଗୃହରେ ଦର୍ଶନ କଲେ ।

ଯେଉଁମାନେ ବର୍ଦ୍ଧମାନଙ୍କୁ ଦର୍ଶନ କରିବାକୁ ଆସୁଥିଲେ, ପ୍ରତ୍ୟେକଙ୍କ ସହିତ ପାଞ୍ଚ ଶହ କରି ଶିଷ୍ୟ ଥିଲେ । ଏହି ଗୁରୁ ଶିଷ୍ୟମାନଙ୍କ ମଧ୍ୟରୁ କାହାରିହେଲେ ବସ୍ତ୍ର ନ ଥିଲା । ସେମାନେ ସମସ୍ତେ ବସ୍ତ୍ର ତ୍ୟାଗକରି ତଥା ସଂଯମ ଆଚରଣ କରି ସିଦ୍ଧାର୍ଥଙ୍କ ପାଖରେ ବାସକଲେ ।.

## 'ଚେଟକ' ରାଜକନ୍ୟା 'ଚନ୍ଦନା'ଙ୍କ ଭକ୍ତି

ସ୍ଫଟିକ ଗୃହରେ ବାସ କରୁଥିବା ଜ୍ଞାନେନ୍ଦ୍ର ବର୍ଦ୍ଧମାନଙ୍କୁ ଦର୍ଶନ କରିବା ପାଇଁ ଶୁକ୍ଳାମ୍ବର ପରିଧାନକାରିଣୀ 'ଚେଟକ' ରାଜକନ୍ୟା 'ଚନ୍ଦନା' ବହୁ ଆର୍ଯ୍ୟ ସାଧ୍ୱୀଙ୍କ ସଙ୍ଗରେ 'ରାଜଗୃହ-ପୁର'କୁ ଆସିଥିଲେ । ସେ ଆର୍ଯ୍ୟ ସାଧ୍ୱୀମାନଙ୍କ ଅଗ୍ରବର୍ତ୍ତିନୀ ହୋଇ ସେଠାରେ ଆସି ପହଞ୍ଚିଥିଲେ । ତାଙ୍କ ପଛରେ ଚତୁରଙ୍ଗ

ସେନା ପରିବୃତ୍ତ ଶ୍ରେଣୀକ ମଧ୍ୟ ଆସି ଉପସ୍ଥିତ ହେଲେ । ବିଦେହ ଗଣ ରାଜ୍ୟର ଅଧିପତି ଥିଲେ ରାଜା ଚେଟକ । ସେ ମହାବୀର ଜନଙ୍କ ସମ୍ପର୍କୀୟ ଥିଲେ । ଏମାନେ ସମସ୍ତେ ଜୀନେନ୍ଦ୍ରଙ୍କୁ ଦେଖି ଆପ୍ୟାୟିତ ହେଲେ ଓ ଭକ୍ତି ନିବେଦନ ଜଣାଇଲେ ।

## ଜୀନେନ୍ଦ୍ର ମନ୍ଦିରର ଶୋଭା

ଜୀନେନ୍ଦ୍ରଙ୍କ ବାସସ୍ଥାନ କ୍ରମେ ମନ୍ଦିର ପାଲଟିଗଲା । ସେହି ସ୍ଫଟିକ ମନ୍ଦିର ନିକଟରେ ଗୋଟିଏ ପୁଷ୍କରିଣୀ ଶୋଭା ପାଉଥିଲେ । ତହିଁରେ ପଦ୍ମଫୁଲ ସବୁ ଫୁଟି ଅତ୍ୟନ୍ତ ମନୋରମ ଦେଖା ଯାଉଥିଲା । ନିକଟସ୍ଥ ଉଦ୍ୟାନରେ ଲତାକୁଞ୍ଜମାନେ ବିଦ୍ୟମାନ ଥିଲେ । ସେଠାରେ ଦଣ୍ଡ, ଚାମର ଓ ପତାକାମାନ ଧରି ଲୋକମାନେ ଛିଡ଼ା ହୋଇଥିଲେ । ପୃଥିବୀର ବିଭିନ୍ନ ଦେଶରୁ ବିଭିନ୍ନ ଭାଷାଭାଷୀ ଲୋକେ ଆସି ସେଠାରେ ରୁଣ୍ଡ ହେଉଥିଲେ ।

## ବର୍ଦ୍ଧମାନଙ୍କ ସିଦ୍ଧି ଲାଭ

ବର୍ଦ୍ଧମାନ ୪୨ ବର୍ଷ ବୟସରେ ସିଦ୍ଧି ଲାଭ କରିଥିଲେ । ସେହି ସମୟରୁ ସେ 'ଜିନ୍' ବା 'ତୀର୍ଥଙ୍କର' ଏବଂ ମହାବୀର ନାମରେ ପରିଚିତ ହେଲେ ।

ଏହାପରେ ସେ ଦୀର୍ଘ ତିରିଶ ବର୍ଷ କାଳ ଭାରତର ବିଭିନ୍ନ ସ୍ଥାନରେ ଧର୍ମ ପ୍ରଚାର କରିଥିଲେ ।

## ପରିବ୍ରାଜକ ମହାବୀର ଜିନ

ପରମ ସିଦ୍ଧି ଲାଭ କଲାପରେ ମହାବୀର ଜିନ ପରିବ୍ରାଜକ ଭାବରେ ବିଭିନ୍ନ ସ୍ଥାନ ଭ୍ରମଣ କରି ଧର୍ମ ପ୍ରଚାର କରିବାକୁ ଲାଗିଲେ । ଏହିପରି ଭାବରେ ସେ ଜୀବନର ଅବଶିଷ୍ଟ ତିରିଶି ବର୍ଷ ଅତିବାହିତ କରିଥିଲେ ।

ପରିବ୍ରାଜକ ମହାବୀର ବିଭିନ୍ନ ସ୍ଥାନରୁ ବହୁ ଶିଷ୍ୟ ସଂଗ୍ରହ କଲେ । ସର୍ବପ୍ରଥମେ ସେ କ୍ଷତ୍ରିୟମାନଙ୍କୁ ଆଗ୍ରହ ସହକାରେ ନିଜ ଧର୍ମରେ ଦୀକ୍ଷିତ କଲେ ।

ଉଲ୍ଲେଖ ଅଛି ଯେ, 'ଗୌତମ ଇନ୍ଦ୍ରଭୂତି' ନାମକ ଜଣେ ବ୍ୟକ୍ତି ତାଙ୍କର ପ୍ରଥମ ଶିଷ୍ୟ ହୋଇଥିଲେ ।

ସେତେବେଳେ ରାଜା ଓ ଅଭିଜାତ ବଂଶର ଲୋକମାନଙ୍କର ସମାଜ ଉପରେ ବିଶେଷ ପ୍ରଭାବ ଥିଲା । ତେଣୁ ସେହି ଧରଣର ଲୋକଙ୍କୁ ସେ ନିଜ ଧର୍ମରେ ଦୀକ୍ଷିତ କରାଇ ସେମାନଙ୍କ ସାହାଯ୍ୟରେ ଧର୍ମ ପ୍ରଚାରର ପଥ ସୁଗମ କରି ପାରିଥିଲେ ।

## ଧର୍ମ ପ୍ରଚାର

ମହାବୀର ଜିନ ମଗଧ, ବିହାର, ପ୍ରୟାଗ, କୌଶାମ୍ବୀ, ଚମ୍ପାପୁରୀ ପ୍ରଭୃତି ନଗରରେ ସୁଦୀର୍ଘ ତିରିଶି ବର୍ଷକାଳ ଧର୍ମ ପ୍ରଚାରରେ ନିମଗ୍ନ ରହିଥିଲେ ।

ରାଜଗୃହକୁ ସେ ନିଜର ପ୍ରଧାନ କର୍ମପୀଠ ଭାବରେ ଗ୍ରହଣ କରିଥିଲେ ।

ରଜା ଗୌତମ ମହାବୀର ଜିନଙ୍କ ଉପଦେଶରେ ମୁଗ୍ଧ ହୋଇ ଜୈନଧର୍ମ ଗ୍ରହଣ କରିଥିଲେ । ଗୌତମଙ୍କ ସମୟରେ ଜିନେନ୍ଦ୍ରଙ୍କ ବାସସ୍ଥାନ ଅତି ବୃହତ୍ ଜିନ ମନ୍ଦିରରେ ପରିଣତ ହୋଇଥିଲା । ଗ୍ରାମ, ବନ, ପ୍ରାନ୍ତର, ଶୈଳ, ନଦୀତଟ ସର୍ବତ୍ର ଜୈନମୂର୍ତ୍ତି ପ୍ରତିଷ୍ଠିତ ହୋଇ ସାରା ଦେଶ ଜିନେନ୍ଦ୍ର ମହାବୀରଙ୍କ ଅହିଂସା ମନ୍ତ୍ରରେ ଉଦ୍‌ବୁଦ୍ଧ ହେଲା ।

## ମହାବୀର ଜିନଙ୍କ ଧର୍ମର ସାରାଂଶ

ପାର୍ଶ୍ୱନାଥ ଜୈନ ଧର୍ମର ତ୍ରୟୋବିଂଶତମ ତୀର୍ଥଙ୍କର ବା ଧର୍ମ ପ୍ରବର୍ତ୍ତକ ଥିଲେ । ତାଙ୍କ ପିତା 'ଅଶ୍ୱସେନ' ବନାରସର ରାଜା ଥିଲେ । ସେ ତିରିଶ ବର୍ଷ ବୟସରେ ସନ୍ନ୍ୟାସବ୍ରତ ଗ୍ରହଣ କରିଥିଲେ । ଏହାପରେ ସେ ସତୁରି ବର୍ଷକାଳ ଧର୍ମ ପ୍ରଚାର କରି, ଏକଶତ ବର୍ଷ ବୟସରେ ସୁମେତ ପର୍ବତ ବା ଆଧୁନିକ ପରେଶନାଥ ପାହାଡ଼ରେ ପ୍ରାଣତ୍ୟାଗ କରିଥିଲେ ।

ପାର୍ଶ୍ୱନାଥଙ୍କ ଧର୍ମର ଚାରି ପ୍ରଧାନ ନୀତି ହେଲା— ଅହିଂସା, ସତ୍ୟ, ଅଚୌର୍ଯ୍ୟ ଓ ଅପରିଗ୍ରହ ।

ମହାବୀର ଜିନ ପାର୍ଶ୍ୱନାଥଙ୍କ ଏହି ଚାରି ନୀତି ଗ୍ରହଣ କରିବା ସଙ୍ଗେ ସଙ୍ଗେ, ତହିଁରେ ପଞ୍ଚମ ନୀତି 'ଜିତେନ୍ଦ୍ରିୟତା' ଯୋଗ କରିଥିଲେ । ପୁଣି ସେ ସମସ୍ତ ପାର୍ଥିବ ବସ୍ତୁ ପ୍ରତି ଚରମ ଅନାସକ୍ତି ଦେଖାଇଥିଲେ । ଏପରିକି ସେ ନିଜର ପିନ୍ଧା ବାସ ସୁଦ୍ଧା ତ୍ୟାଗକରି ଦିଗମ୍ବର ରୂପେ ରହିଥିଲେ ।

ଜୈନଧର୍ମର ଚରମ ଲକ୍ଷ୍ୟ ଥିଲା ନିର୍ବାଣ । ପୁନର୍ଜନ୍ମରୁ ଆତ୍ମାକୁ ବିମୁକ୍ତ କରିବା ହେଲା ନିର୍ବାଣର ଲକ୍ଷ୍ୟ । ମୁକ୍ତିଲାଭ

ପାଇଁ ସତ୍‌ଜ୍ଞାନ, ସତ୍‌କର୍ମ ଓ ସତ୍‌ ବ୍ୟବହାର ଏହି ତିନି ପନ୍ଥା ଗ୍ରହଣ କରି ଯାଉଥିଲେ ।

ମହାବୀର କହୁଥିଲେ, ମନୁଷ୍ୟର ଆତ୍ମା ମାୟାଗ୍ରସ୍ତ ହୋଇ ଆଶା ଓ ଦୁଃଖରେ ବୁଡ଼ିରହେ । ସେଥିପାଇଁ ତାକୁ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ପଡ଼ିଥାଏ । ପୁନର୍ଜନ୍ମ ଦ୍ୱାରା କେବଳ କର୍ମଫଳ ଭୋଗ କରାଯାଏ । ସଂସାରରେ ଦୁଃଖ ଓ ପୁନର୍ଜନ୍ମରୁ ମୁକ୍ତିଲାଭ କରିବା ପାଇଁ ଇନ୍ଦ୍ରିୟ ଜୟ କରି ସବୁ ଆଶା ତ୍ୟାଗ କରିବାକୁ ହେବ ।

## ମୂଳମନ୍ତ୍ର ଅହିଂସା

'ଅହିଂସା' ମହାବୀରଙ୍କ ଜୀବନ ତଥା ଜୈନଧର୍ମର ମୂଳମନ୍ତ୍ର ।

ମହାବୀର କହୁଥିଲେ, ମନୁଷ୍ୟର ଦେହରେ ଯେପରି ଆତ୍ମା ବିଦ୍ୟମାନ, କ୍ଷୁଦ୍ର କୀଟପତଙ୍ଗ ଦେହରେ ମଧ୍ୟ ସେହିପରି ଆତ୍ମା ରହିଛି । ଏପରିକି ବୃକ୍ଷଲତା, ପୁଷ୍ପ ପତ୍ରରେ ମଧ୍ୟ ପ୍ରାଣସତ୍ତା ରହିଛି । ପ୍ରାଣମୟ ଜଗତରେ ଅହିଂସା ଜୀବନଯାପନ ପ୍ରକୃତ ମନୁଷ୍ୟର ଧର୍ମ ।

ମହାବୀର ହିନ୍ଦୁଶାସ୍ତ୍ର ବେଦ ଉପରେ ବିଶ୍ୱାସ ସ୍ଥାପନ କରୁ ନ ଥିଲେ । ବୈଦିକ ଯାଗଯଜ୍ଞର ଉପାଦେୟତା ତଥା ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟକୁ ସ୍ୱୀକାର କରୁ ନ ଥିଲେ । ଜାତିଭେଦରେ ତାଙ୍କର ଆସ୍ଥା ନ ଥିଲା । ପଶୁ ବଳିକୁ ଅତ୍ୟନ୍ତ ଘୃଣା କରୁଥିଲେ ।

## ଆଉ କେତେକ ସଂବାଦ : 'ବିଦେହ' ସାଧନା

ମହାବୀର ବର୍ତ୍ତମାନ ସାଧନାର ପ୍ରଥମ ସୋପାନ ରୂପେ ବିଦେହ ସାଧନାକୁ ବାଛି ନେଇଥିଲେ । ସେ ବିଦେହ ସାଧନାରେ ନିମଗ୍ନ ରହି ଦେହର ଯତ୍ନ ନେଲେନାହିଁ । ତାଙ୍କ-ପାଇଁ ଗ୍ରୀଷ୍ମ, ବର୍ଷା, ଶୀତ ପ୍ରଭୃତି ସବୁ ଋତୁ ସମାନ ରହିଲା ।

କ୍ଷୁଧା ଓ ତୃଷାକୁ ଜୟ କରିବା ପାଇଁ ସେ ସାଧନାରେ ଲିପ୍ତ ରହିଲେ । ନିଦ୍ରା ପରିହାର କରି ଧ୍ୟାନରେ ନିମଗ୍ନ ରହିଲେ ।

ଏହିପରି ସ୍ୱଭାବରେ ସେ ବିଦେହ ସାଧନାରେ ସିଦ୍ଧିଲାଭ କଲେ । ଏଥିରୁ ତାଙ୍କର ଶାନ୍ତି, ମୈତ୍ରୀ ଓ ଅହିଂସାଭାବ ଜାତ ହୋଇଥିଲା ।

## ସର୍ପ ଓ ସମତା

ମହାବୀର ଜନ 'କନଖଲ ଆଶ୍ରମ' ନିକଟସ୍ଥ ଦେବାଳୟ ମଣ୍ଡପରେ ଧ୍ୟାନ କରୁଥିଲାବେଳେ, 'ଚଣ୍ଡକୌଶଳ ସର୍ପ' ବିଷ ଉଦ୍‌ଗାର କରିବାକୁ ଲାଗିଲା । ଏହି ସର୍ପ ମହାବୀରଙ୍କୁ ବାର-ମ୍ୱାର ଦଂଶନ କଲା ।

ସର୍ପ ଦଂଶନ ଫଳରେ ମହାବୀରଙ୍କ ଚକ୍ଷୁରୁ ବିଷ ପରିବର୍ତ୍ତେ ଅମୃତ ଧାର ଝରିବାକୁ ଲାଗିଲା । ତାଙ୍କ ମନର ମୈତ୍ରୀଭାବ ସର୍ପର ବିଷକୁ ଅମୃତରେ ପରିଣତ କରିଥିଲା ।

ପରିଶେଷରେ ହିଂସା ଉପରେ ଅହିଂସାର ବିଜୟ ହେଲା ।

ଏହା ଦେଖି ସର୍ପର କ୍ରୋଧ ଶାନ୍ତ ହେଲା ଓ ସଦ୍ବୁଦ୍ଧିର ପାଇଁ ସେ ଅହିଂସା ଧର୍ମରେ ଦୀକ୍ଷିତ ହୋଇଥିଲା ।

## କୈବଲ୍ୟ

ମହାବୀର ଜିନ ଲାଭ କ୍ଷତି, ସୁଖ ଦୁଃଖ, ନିନ୍ଦା ପ୍ରଶଂସା, ମାନ ଅପମାନ, ଜୀବନ ମୃତ୍ୟୁ ପ୍ରଭୃତି ଯାବତୀୟ ସାଂସାରିକ ପରୀକ୍ଷାରେ ବିଜୟ ହାସଲ କରିଥିଲେ । ତାଙ୍କର 'ବିଦେହ' ତଥା 'ଅଭୟ' ସାଧନାରେ ସିଦ୍ଧିଲାଭ ହୋଇଥିଲା । ସେ ବୀତରାଗ ପ୍ରାପ୍ତ ହୋଇ 'କୈବଲ୍ୟ' ହୋଇଗଲେ ।

## ନିରୀଶ୍ୱରବାଦ

ମହାବୀର ଜିନ ଈଶ୍ୱରଙ୍କୁ ମାନୁ ନ ଥିଲେ । ସେ କୌଣସି ଶାସ୍ତ୍ରକୁ ଈଶ୍ୱରୀୟ ବୋଲି ସ୍ୱୀକାର କରୁ ନ ଥିଲେ ।

ତାଙ୍କ ମତରେ, "ଜ୍ଞାନର ମୂଳ ହେଉଛି ମାନବ । ଆତ୍ମା ଓ ପରମାତ୍ମା ଏକ ଅଟେ । ଆତ୍ମା କର୍ମ ବନ୍ଧନରୁ ମୁକ୍ତ ହୋଇବା ପରେ ପରମାତ୍ମା ହୋଇଯାଏ ।"

## ସଂଘଧର୍ମ

ଧର୍ମସଂଘର ସୁ-ବ୍ୟବସ୍ଥା ପାଇଁ ମହାବୀର ସଂଘଧର୍ମର ସୂତ୍ର ବାହାର କରିଥିଲେ । ସେ ନିମ୍ନଲିଖିତ ବିଷୟ ପ୍ରକାଶ କରିଥିଲେ—

(କ) ନିରାଶ୍ରୟଙ୍କୁ ଆଶ୍ରୟ ଦେବାପାଇଁ ତତ୍ପର ହୁଅ ।

(ଖ) ନୂତନ ଆଗନ୍ତୁକକୁ ଶିକ୍ଷା ଦେବା ପାଇଁ ତତ୍ପର ହୁଅ ।

(ଗ) ରୋଗୀର ସେବା ପାଇଁ ତତ୍ପର ହୁଅ ।

(ଘ) ପାରସ୍ପରିକ କଳହ ଦେଖିଲେ କୌଣସି ପକ୍ଷ ଗ୍ରହଣ ନ କରି, ଉଭୟଙ୍କୁ ଶାନ୍ତ କରିବାକୁ ଚେଷ୍ଟା କର ।

## ଧର୍ମର ସ୍ୱରୂପ

ମହାବୀର କହୁଥିଲେ, ଯାହାର ସ୍ୱରୂପ ଅହିଂସା, ସଂଯମ ଓ ତପ—ତାହାହିଁ ଧର୍ମ ।

ବିଷୟ ବାସନା, ଧନ ଓ ସୂତ୍ର ଜଡ଼ିତ ଧର୍ମ ବିଷ ପରି ବିପଜ୍ଜନକ ।

ଚରିତ୍ରହୀନ ବ୍ୟକ୍ତି କୌଣସି ପରିବାର, ସମାଜ, ସଂପ୍ରଦାୟ ଓ ଦେଶପାଇଁ ଉପକାରୀ ନୁହେଁ ।

ସେ ପୁଣି କହିଥିଲେ, ଭିତର ପାଣ୍ଡିତ୍ୟ ଓ ବିଦ୍ୟାର ଅନୁଶାସନ ମନରେ ଶାନ୍ତି ଆଣେନାହିଁ । ଧର୍ମ ହିଁ ମାନସିକ ଶାନ୍ତିର ଏକମାତ୍ର ଅବଲମ୍ବନ ।

ଆତ୍ମାନୁଶାସନ ସକଳ ଧର୍ମ, ସକଳ ଅନୁଶାସନର ମୂଳ ପିଣ୍ଡ ।

## ସତ୍ୟ

ମହାବୀରଙ୍କ ମତରେ ସତ୍ୟର ବିକଳ୍ପ ନାହିଁ । ଏହା ଶାଶ୍ୱତ ଓ ଦେଶ-କାଳ-ପାତ୍ରର ଊର୍ଦ୍ଧ୍ୱରେ ।

ଏହି ସତ୍ୟ ସମ୍ପର୍କରେ ତତ୍କାଳୀନ ବୁଦ୍ଧଦେବ ଓ ଚୀନ ଦେଶର ଲାଓସେ, କନ୍‌ଫୁସିଅସ୍, ୟୁରୋପର ପିଥାଗୋରସ୍ ପ୍ରଭୃତି ମହାନ୍ ଧର୍ମ ପ୍ରଚାରକମାନେ ସମାନ ମତ ପ୍ରଦାନ କରି-ଅଛନ୍ତି ।

## ମହାବୀରଙ୍କ ଅନ୍ତିମ ସମୟ

ବର୍ଦ୍ଧମାନ ତିରିଶ ବର୍ଷ ବୟସରେ ଗୃହତ୍ୟାଗୀ ହୋଇ ୪୨ ବର୍ଷ ବୟସରେ ଦିବ୍ୟଜ୍ଞାନ ଲାଭ କରିବା ପରେ ଦୀର୍ଘ ତିରିଶ ବର୍ଷ କାଳ ଭାରତର ବିଭିନ୍ନ ସ୍ଥାନ ଜୈନଧର୍ମ ପ୍ରଚାର ଓ ପ୍ରତିଷ୍ଠା କଲେ ।

ଅବଶେଷରେ ସେ ଧ୍ୟାନ ବଳରେ ତାଙ୍କର ଅନ୍ତିମ ସମୟ ଉପସ୍ଥିତ ହେବା କଥା ଜାଣି ପାରିଥିଲେ । ଏହାପରେ ସେ ତାଙ୍କର ସମସ୍ତ ଶିଷ୍ୟବର୍ଗଙ୍କୁ ପାଟଣା ଜିଲ୍ଲାର ପାବାପୁରୀକୁ ଆସିବାକୁ ଜଣାଇ ଦେଲେ । ବିଦାୟର ଅନ୍ତିମ ଦିନ ସେ ସମଗ୍ର ରାତି ଉଜାଗର ରହି ସମବେତ ଶିଷ୍ୟମାନଙ୍କୁ ଧର୍ମ ଉପଦେଶ ପ୍ରଦାନ କରିବାକୁ ଲାଗିଲେ ।

କ୍ରମେ ତାଙ୍କ ଜୀବନର ଓ ସେହି କାଳରାତ୍ରିର ଶେଷ ପ୍ରହର ଉପସ୍ଥିତ ହେଲା । ସାରା ରାତି ଉଜାଗର ଥିବାରୁ ଶିଷ୍ୟ-ମାନେ ରାତ୍ରିର ଶେଷ ପ୍ରହରରେ ନିଦ୍ରା ଗଲେ । ଠିକ୍ ଏହି ସମୟରେ ମହାବୀର ଜିନ ପଦ୍ମାସନରେ ବସି ଦେହ ତ୍ୟାଗ କଲେ ।

ପ୍ରଭାତ ହେବାରୁ ଶିଷ୍ୟମାନେ ଜାଗ୍ରତ ହୋଇ ଦେଖିଲେ, ଗୁରୁଦେବ ଅନ୍ତିମ ଶୟନରେ ନିମଗ୍ନ ଅଛନ୍ତି । ଏହି ଦୃଶ୍ୟ ସେମାନଙ୍କୁ ମର୍ମାହତ କଲା ।

ମହାବୀରଙ୍କ ଅନ୍ତିମ ଦିବସକୁ ସ୍ମରଣ ରଖିବା ନିମନ୍ତେ ଶିଷ୍ୟଗଣ ଓ ଜନସାଧାରଣ ରାତିରେ ଉଜାଡ଼ିରେ ରହି ସମଗ୍ର ପାବାପୁରୀକୁ ଆଲୋକମାଳାରେ ଉଦ୍‌ଭାସିତ କଲେ । ସେହିଦିନ ଦୀପାବଳୀ ଅମାବାସ୍ୟା ତିଥି ଥିଲା । ଏହିଦିନ ଭଗବାନ ମହା-ବୀରଙ୍କ ପରି ନିର୍ବାଣ ହୋଇଥିଲା ।

ତୀର୍ଥଙ୍କର ମହାବୀରଙ୍କ ଜୀବନକୁ ଜ୍ୟୋତିର୍ମୟ କରିଥିବା ଦୀପାବଳୀ ଉତ୍ସବ ଏବେ ମଧ୍ୟ କାର୍ତ୍ତିକ ଅମାବାସ୍ୟା ଦିନ ସମଗ୍ର ଭାରତ ବର୍ଷରେ ପାଳିତ ହୋଇ ଆସୁଛି ।

ଦେହତ୍ୟାଗ ବେଳକୁ ମହାବୀରଙ୍କୁ ୭୨ ବର୍ଷ ବୟସ ହୋଇଥିଲା ।

ମହାବୀରଙ୍କ ଜୀବିତାବସ୍ଥାରେ ତାଙ୍କଦ୍ୱାରା ପ୍ରଚାରିତ ଜୈନଧର୍ମ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ସେ ମଗଧ ଓ କୋଶଳ ରାଜ୍ୟରେ ସ୍ୱଧର୍ମ ନୀତି ପ୍ରଚାର କରିଥିଲେ । ସରଳ ବୋଧଗମ୍ୟ ପ୍ରାକୃତ ଭାଷାରେ ସେ ଧର୍ମ ପ୍ରଚାର କରୁଥିବାରୁ ତାଙ୍କ ଧର୍ମ ପ୍ରତି ବହୁଲୋକ ଆକୃଷ୍ଟ ହେଉଥିଲେ । ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ସେ ସମସ୍ତଙ୍କୁ ଧର୍ମ ଦୀକ୍ଷା ଦେଉଥିଲେ ।

ମହାବୀର ଜୈନଧର୍ମ ପରମ୍ପରାରେ ସର୍ବଶେଷ ତୀର୍ଥଙ୍କର ରୂପେ ଗୃହୀତ । ତାଙ୍କର ନିର୍ବାଣ ପ୍ରାପ୍ତି ପରେ ଅନ୍ୟ କେହି ତୀର୍ଥଙ୍କର ରୂପେ ସମ୍ମାନିତ ହୋଇ ନାହାନ୍ତି ।

ମହାବୀରଙ୍କ ସମୟରେ ଯେଉଁ ଜୈନଧର୍ମ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସୀମିତ ଥିଲା, ତାଙ୍କ ଅନ୍ତେ ତାହା ପୂର୍ବ-ପଶ୍ଚିମ-ଉତ୍ତର-ଦକ୍ଷିଣ ଭାରତରେ ବ୍ୟାପିଗଲା । ବହୁ ଜୈନ କ୍ଷେତ୍ରର ଉଦ୍‌ଭବ ହେଲା । ପରେଶନାଥ, ରାଜଗିର, ଖଣ୍ଡଗିରି, ଆବୁ ପ୍ରଭୃତି ସ୍ଥାନ ଏବେ ଜୈନଧର୍ମର ତୀର୍ଥ କ୍ଷେତ୍ର ରୂପେ ପରିଗଣିତ ହେଲା ।

## ଜୈନଧର୍ମର 'ତୀର୍ଥଙ୍କର'

'ତୀର୍ଥଙ୍କର' ଶବ୍ଦ ସହିତ ଜୈନଧର୍ମାବଲମ୍ବୀମାନେ ସୁପରିଚିତ । ଏହି ଶବ୍ଦର ଅର୍ଥ କରି ଓଡ଼ିଶାର ଜୈନମାନେ କହନ୍ତି, 'ତୀର୍ଥ ଯିଏ କରେ, ସେ ତୀର୍ଥଙ୍କର ।'

ସଂସାର ରୂପକ ସାଗରରୁ 'ଆତ୍ମା'କୁ ପାରି କରିବା ପାଇଁ ଧର୍ମ ହିଁ ଏକମାତ୍ର କର୍ଣ୍ଣଧାର । ଏଣୁ ଜୈନ ପରିଭାଷାରେ 'ତୀର୍ଥ ଅର୍ଥ ଧର୍ମ' ବୋଲି କୁହାଯାଏ ।

ତୀର୍ଥଙ୍କରମାନେ ନିଜର ଜୀବଦ୍ଦଶାରେ ପ୍ରାଣୀମାନଙ୍କୁ ସଂସାର-ସାଗରରୁ ପାରି କରିବା ପାଇଁ ଧର୍ମ-ତୀର୍ଥର ପ୍ରତିଷ୍ଠା କରିଥାନ୍ତି । ତେଣୁ ସେମାନଙ୍କୁ ତୀର୍ଥଙ୍କର କୁହାଯାଏ ।

ସାଧୁ, ସାଧ୍ୱୀ, ଉପାସକ (ଶ୍ରାବକ), ଉପାସିକା (ଶ୍ରାବିକା) ଏହି ଚାରି ଜଣଙ୍କୁ 'ତୀର୍ଥ' କୁହାଯାଏ । କାରଣ ଏମାନେ ସଂଘ ଧର୍ମକୁ ଆଚରଣ କରିଥାନ୍ତି । ଧର୍ମସଂଘ ପ୍ରତିଷ୍ଠା କରୁଥିବା ମହାପୁରୁଷମାନଙ୍କୁ ତୀର୍ଥଙ୍କର କୁହାଯାଏ ।

ଜୈନଧର୍ମ ମତରେ ଆଧ୍ୟାତ୍ମିକତାର ସର୍ବୋଚ୍ଚ ଶିଖର ଲାଭ କରିଥିବା ମହାପୁରୁଷଙ୍କୁ 'ତୀର୍ଥଙ୍କର' କୁହାଯାଏ । ଏହି

ତୀର୍ଥଙ୍କରମାନେ ତ୍ୟାଗପୂର୍ଣ୍ଣ ବୈରାଗ୍ୟ ଆଚରଣ କରି, ନିଜ ମନକୁ ବିକାର ବିମୁକ୍ତ କରି, କଠିନ ତପ ଆଚରଣ ପୂର୍ବକ ଅଲୌକିକ ସତ୍ୟର ଜ୍ୟୋତି ଲାଭ କରିଥାନ୍ତି । ଏହା 'କେବଳ ଜ୍ଞାନ' ବୋଲି ଜୈନ ଶାସ୍ତ୍ରରେ କୁହାଯାଇଛି ।

ଏହି ତୀର୍ଥଙ୍କରମାନେ 'କେବଳ ଜ୍ଞାନ' ଉପଲବ୍ଧି କରି ସଂସାର ପ୍ରାଣୀମାନଙ୍କୁ ଧର୍ମୋପଦେଶ ଦେଇ, ଅସତ୍ ପଥରୁ ସତ୍ ପଥକୁ ଆଣନ୍ତି । ଏମାନେ ପୃଥିବୀରେ ଶାନ୍ତି ସାମ୍ରାଜ୍ୟ ସ୍ଥାପନ କରି ନିଜ କର୍ତ୍ତବ୍ୟ ପାଳନ କରିଥାନ୍ତି । ଏମାନେ ସଂସାରର ଅଜ୍ଞାନ ପ୍ରାଣୀମାନଙ୍କୁ ସମ୍ୟକ ଜ୍ଞାନ ପ୍ରଦାନ କରି ଭୌତିକ ସୁଖ କାମନାରୁ ସେମାନଙ୍କୁ ବିମୁକ୍ତ କରିବା ସଙ୍ଗେ ସଙ୍ଗେ, ସେମାନଙ୍କ ପାଇଁ ଆଧ୍ୟାତ୍ମିକ ସୁଖ ଶାନ୍ତିର ପଥ ଉନ୍ମୁକ୍ତ କରିଥାନ୍ତି ।

ମହାବୀରଙ୍କୁ ଜୈନଧର୍ମର ଶେଷ ତୀର୍ଥଙ୍କର କୁହାଯାଏ । ତାଙ୍କୁ ସର୍ବଜ୍ଞ, ସର୍ବଦର୍ଶୀ ଓ ମୋକ୍ଷ ମାର୍ଗର ପ୍ରବର୍ତ୍ତକ ରୂପେ ସ୍ୱୀକାର କରାଯାଏ ।

ଜୈନଧର୍ମର ଶ୍ରମଣ ପରଂପରାରେ ଆଦିନାଥ 'ଋଷଭ ଦେବ'ଙ୍କଠାରୁ ଆରମ୍ଭ କରି ମହାବୀରଙ୍କ ପର୍ଯ୍ୟନ୍ତ ୨୪ ଜଣ ତୀର୍ଥଙ୍କର ତଥା ଅନେକ ମୁନିଋଷି ରହିଛନ୍ତି । ଏମାନେ ଜଗତର ପ୍ରାଣୀମାନଙ୍କୁ ଜନ୍ମ-ଜରା-ମୃତ୍ୟୁ ରୂପକ ତ୍ରିତାପରୁ ଉଦ୍ଧାର କରିବା ପାଇଁ ଧର୍ମ ଉପଦେଶମାନ ଦେଇ ଅଛନ୍ତି ।

ମହାବୀର ଜନଙ୍କ ଠିକ୍ ପୂର୍ବରୁ, ଅର୍ଥାତ୍ ଜୈନଧର୍ମର ତେଇଶିତମ ତୀର୍ଥଙ୍କର ବା ଧର୍ମ ପ୍ରଚାରକଙ୍କ ନାମ ହେଉଛି

ପାର୍ଶ୍ୱନାଥ । ଅନ୍ୟ ବାଇଶି ଜଣ ତୀର୍ଥଙ୍କର ପ୍ରାଗୈତିହାସିକ ଯୁଗରେ ଜନ୍ମ ଗ୍ରହଣ କରିଥିଲେ ବୋଲି କୁହାଯାଏ ।

ଜୈନମାନେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ; କିନ୍ତୁ ଏମାନେ ତୀର୍ଥଙ୍କରମାନଙ୍କୁ ପୂଜା କରିଥାନ୍ତି । ଜୈନଶାସ୍ତ୍ର ଅନୁଯାୟୀ ଏହି ତୀର୍ଥଙ୍କରମାନେ ହିନେ କର୍ମ ଓ ପ୍ରବୃତ୍ତି ବନ୍ଧନରେ ବାନ୍ଧି ହୋଇଥିଲେ; କିନ୍ତୁ ପରେ ନିଜର କର୍ମ, ସାଧନା ଓ ସିଦ୍ଧି ବଳରେ ଜାଗତିକ ବନ୍ଧନରୁ ନିଜକୁ ବିମୁକ୍ତ କରି ମୋକ୍ଷ ଆତ୍ମା ଲାଭ କଲେ ।

ଜୈନମାନେ ବିଶ୍ୱାସ କରନ୍ତି, ସବୁ ମଣିଷ ଜିନ ବା ତୀର୍ଥଙ୍କରମାନଙ୍କର ଉପଦେଶ ମାନି ଚାଲିଲେ ମୋକ୍ଷ ଲାଭ କରି ପାରିବେ ।

ଜୈନଧର୍ମରେ ଯେଉଁ ଚବିଶ ଜଣ ତୀର୍ଥଙ୍କରଙ୍କ ନାମର ସୂଚନା ମିଳେ ସେମାନଙ୍କ ନାମ ତାଲିକା ନିମ୍ନୋକ୍ତ ସୂତ୍ରରେ ଉଲ୍ଲେଖ କରାଗଲା—

(୧) ଋଷଭନାଥ (୨) ଅଜିତନାଥ (୩) ସମ୍ଭବନାଥ (୪) ଅଭିନନ୍ଦନ ନାଥ (୫) ସୁମତି ନାଥ (୬) ପଦ୍ମପ୍ରଭ (୭) ସୁପାର୍ଶ୍ୱନାଥ (୮) ଚନ୍ଦ୍ରପ୍ରଭ (୯) ସୁବିଧିନାଥ (୧୦) ଶୀତଳ ନାଥ (୧୧) ଶ୍ରେୟାଂଶ ନାଥ (୧୨) ବାସୁ ପୂଜ୍ୟ (୧୩) ବିମଳ ନାଥ (୧୪) ଅନନ୍ତନାଥ (୧୫) ଧର୍ମନାଥ (୧୬) ଶାନ୍ତିନାଥ (୧୭) କୁନ୍ଥୁନାଥ (୧୮) ଆରନାଥ (୧୯) ମଲ୍ଲିନାଥ (୨୦) ମୁନି ସୁବ୍ରତ (୨୧) ନାମିନାଥ (୨୨) ନେମିନାଥ (୨୩) ପାର୍ଶ୍ୱ-ନାଥ (୨୪) ମହାବୀର ।

# ପାର୍ଶ୍ୱନାଥ ଓ ମହାବୀର ଜିନ

ଜୈନଧର୍ମରେ ପାର୍ଶ୍ୱନାଥ ଓ ମହାବୀରଙ୍କୁ ଉଚ୍ଚ ଆସନ ଦିଆ ଯାଇଥାଏ । ପାର୍ଶ୍ୱନାଥ ଜୈନଧର୍ମର ୨୩ ତମ ତୀର୍ଥଙ୍କର ଓ ମହାବୀର ଜିନ ୨୪ ତମ ତୀର୍ଥଙ୍କର ।

# ପାର୍ଶ୍ୱନାଥଙ୍କ ଜୀବନୀ

ପାର୍ଶ୍ୱନାଥ ୮୧୭ ଖ୍ରୀଷ୍ଟାବ୍ଦରେ ବନାରସଠାରେ ଜନ୍ମ-ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ 'ଅଶ୍ୱସେନ' ଓ ମାତାଙ୍କ ନାମ 'ବାମା' ଥିଲା । ଅଶ୍ୱସେନ ବନାରସର ରାଜା ଥିଲେ ।

ତୀର୍ଥଙ୍କର ପାର୍ଶ୍ୱନାଥଙ୍କ ଜନ୍ମଲାଭ ପୂର୍ବରୁ ତାଙ୍କ ମାତା 'ବାମା' ସ୍ୱପ୍ନରେ ଏକ ଦୀର୍ଘକାୟ ସର୍ପକୁ ଦେଖିଥିଲେ । କାଳକ୍ରମେ 'ସର୍ପ' ପାର୍ଶ୍ୱନାଥଙ୍କ ଜୀବନ ସଙ୍ଗରେ ବହୁ ଭାବରେ ଜଡ଼ିତ ହୋଇଥିଲା । ଦିନେ ଜଣେ ବ୍ରାହ୍ମଣ ସାଧୁ ଖଣ୍ଡେ କାଷ୍ଠ ଦେହରେ ଅଗ୍ନି ସଂଯୋଗ କଲା । ଦୈବାକ୍ରମେ ଏକ ସର୍ପ ସେହି କାଷ୍ଠ ଦେହରେ ଛନ୍ଦି ହୋଇଥିଲା । ପାର୍ଶ୍ୱନାଥ ସେହି ବାଟ ଦେଇ ଚାଲି ଯାଉଥିବା ସମୟରେ ଉକ୍ତ ମୃତ୍ୟୁମୁଖୀ ସର୍ପକୁ ଦେଖି ଅଗ୍ନି ମୁହଁରୁ ତାକୁ ରକ୍ଷା କଲେ । ପରବର୍ତ୍ତୀ କାଳରେ ଏକ ଦୁଷ୍ଟମତି ବ୍ରାହ୍ମଣ 'କାମଠ' ତାନ୍ତ୍ରିକ ଶକ୍ତି ବଳରେ ବର୍ଷା କରାଇ ପାର୍ଶ୍ୱ-ନାଥଙ୍କ ଧ୍ୟାନ ଭଗ୍ନ କରିବାକୁ ଚେଷ୍ଟା କଲା । ଉକ୍ତ ସର୍ପ ଧରଣେନ୍ଦ୍ର ଭାବରେ ଜନ୍ମଗ୍ରହଣ କରି ନିଜର ବିଶାଳ ଫଣା ସାହାଯ୍ୟରେ ପାର୍ଶ୍ୱନାଥଙ୍କୁ ମୂଷଳ ବାରିପାତ କବଳରୁ ରକ୍ଷା କରି ପାରିଥିଲା ।

ଏହି କାରଣରୁ ପାର୍ଶ୍ୱନାଥଙ୍କ ବିଗ୍ରହ ଉପରେ ସର୍ପ ଫଣାର ଚିହ୍ନ ଅଙ୍କିତ ହୋଇଥାଏ ।

ଆହୁରି ଜଣାଯାଏ ଯେ, ପାର୍ଶ୍ୱନାଥ ତାଙ୍କର ଯୌବନାବସ୍ଥାରେ ଅତି ସୁନ୍ଦର ଓ ସ୍ୱାସ୍ଥ୍ୟବାନ ଥିଲେ । ତାଙ୍କର ବାହୁରେ ଅସୀମ ବଳ ଥିଲା । ସେ କଳିଙ୍ଗର ଯବନ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି, କୁଶସ୍ଥଳୀର ରାଜଜେମା ପ୍ରଭାବତୀଙ୍କ ପାଣିଗ୍ରହଣ କରିଥିଲେ ।

ପାର୍ଶ୍ୱନାଥଙ୍କୁ ଯେତେବେଳେ ୩୨ ବର୍ଷ ବୟସ, ସେ ସାଂସାରିକ ମାୟା ମମତା ପରିତ୍ୟାଗ କରି ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ । ବନାରସଠାରେ ସେ ୮୩ ଦିନ ପର୍ଯ୍ୟନ୍ତ କଠୋର ତପସ୍ୟା ଆଚରଣ କରି ୮୪ ଦିବସରେ, ଏକ ଧାତୁକୀ ବୃକ୍ଷ ମୂଳରେ 'କେବଳ ଜ୍ଞାନ' ପ୍ରାପ୍ତ ହୋଇଥିଲେ ।

'କେବଳ ଜ୍ଞାନ' ପ୍ରାପ୍ତି ପରେ ସେ ନିଜର ମାତା ଓ ପତ୍ନୀଙ୍କୁ ପ୍ରଥମେ ନିଜ ଧର୍ମରେ ଦୀକ୍ଷିତ କରିଥିଲେ ।

ପାର୍ଶ୍ୱନାଥ ସତୁରି ବର୍ଷ କାଳ ଧର୍ମ ପ୍ରଚାର କରି ଏକଶତ ବର୍ଷ ବୟସରେ ପରେଶନାଥ ପାହାଡ଼ରେ ଇହଲୀଳା ସମ୍ବରଣ କରିଥିଲେ । ସେହିଦିନଠାରୁ ପରେଶନାଥ ପାହାଡ଼ ଜୈନମାନଙ୍କର ଏକ ପ୍ରଧାନ ତୀର୍ଥରେ ପରିଣତ ହେଲା । ପାର୍ଶ୍ୱନାଥଙ୍କ ସମୟରେ ଉପନିଷଦ ଲେଖା ହେଉଥିଲା ବୋଲି କୁହାଯାଏ ।

## ପାର୍ଶ୍ୱନାଥ ଓ ମହାବୀରଙ୍କ ମଧ୍ୟରେ ମୌଳିକ ପ୍ରଭେଦ

ପାର୍ଶ୍ୱନାଥ ଚତୁର୍ଯାମ ବା ଚାରୋଟି ପ୍ରତିଜ୍ଞା ପାଳନ କରିବାକୁ ତାଙ୍କର ଶିଷ୍ୟମାନଙ୍କୁ ପରାମର୍ଶ ଦେଇଥିଲେ ।

ତାହା ହେଲା—(୧) କାହାକୁ ହିଂସା କରିବ ନାହିଁ (ଅହିଂସା), (୨) ମିଥ୍ୟା କହିବ ନାହିଁ (ସତ୍ୟ), (୩) ଚୋରି କରିବ ନାହିଁ (ଅଚୌର୍ଯ୍ୟ) ଏବଂ (୪) କୌଣସି ଦ୍ରବ୍ୟ ପରିଗ୍ରହ କରିବ ନାହିଁ (ଅପରିଗ୍ରହ)। ପାର୍ଶ୍ୱନାଥ ତାଙ୍କର ଶିଷ୍ୟମାନଙ୍କୁ ବସ୍ତ୍ର ପରିଧାନ କରିବାକୁ ଅନୁମତି ଦେଇଥିଲେ ।

କିନ୍ତୁ ମହାବୀର ଜିନ ଏହିସବୁ ପ୍ରଜ୍ଞା (ଚତୁର୍ଯାମ) ସହିତ ଆଉ ଏକ ପ୍ରଜ୍ଞା ଯୋଗ କରିଥିଲେ । ସେ ଶିଷ୍ୟମାନଙ୍କୁ ଉଲଗ୍ନ ରହିବାକୁ ପରାମର୍ଶ ଦେଲେ ଓ ନିଜେ ଉଲଗ୍ନ ରହୁଥିଲେ । ତାଙ୍କ ମତରେ ଯିଏ ପ୍ରକୃତ ଯୋଗୀ, ସେ ଲଜ୍ଜା ବର୍ଜନ କରିବା ଏକାନ୍ତ ବାଞ୍ଛନୀୟ । ସେ ଶୀତ, ବର୍ଷା କିମ୍ବା ଗ୍ରୀଷ୍ମ ଉପଲବ୍ଧି କରିପାରିବ ନାହିଁ (ଅଦେହ) । ଲଜ୍ଜା ତ୍ୟାଗ କରି ନ ପାରିଲେ ମୁକ୍ତି ମିଳିବ ନାହିଁ । ଲଜ୍ଜା ପାପର ଚିହ୍ନ ବୋଲି ସେ ଘୋଷଣା କଲେ । ତେଣୁ ଲଜ୍ଜାର ବିନାଶରେ ପାପର ବିନାଶ ବୋଲି ସେ କହିଥିଲେ । ତାଂକ ମତରେ ବସ୍ତ୍ର ପରିଧାନରୁ ବିରତ ହେବା ଅର୍ଥ, ପାପରୁ ମୁକ୍ତିଲାଭ କରିବା ।

## ଜୈନଧର୍ମର ଦୁଇ ଗୋଷ୍ଠୀ : ଶ୍ୱେତାମ୍ବର ଓ ଦିଗାମ୍ବର

ମହାବୀର ଜିନଂକ ମହାପ୍ରୟାଣର ବହୁକାଳ ପରେ, ବସ୍ତ୍ର ପରିଧାନକୁ କେନ୍ଦ୍ର କରି ଜୈନଧର୍ମାବଲମ୍ବୀମାନଂକ ମଧ୍ୟରେ ଗୁରୁତର ମତଭେଦ ଦେଖାଦେଲା । ଏମାନେ 'ଶ୍ୱେତାମ୍ବର' ଓ 'ଦିଗାମ୍ବର' ଏହି ଦୁଇ ଗୋଷ୍ଠୀରେ ବିଭକ୍ତ ହେଲେ ।

ଶ୍ୱେତାମ୍ବର ଗୋଷ୍ଠୀର ଜୈନମାନେ ପାର୍ଶ୍ୱନାଥଂକ ପଦାଂକ ଅନୁସରଣ କରି ବସ୍ତ୍ର ପରିଧାନ କଲେ । ଦିଗାମ୍ବରମାନେ ମହାବୀରଂକ ପଦାଂକ ଅନୁସରଣ କରି ଉଲଗ୍ନ ରହିଲେ ।

ଶ୍ୱେତାମ୍ବର ଓ ଦିଗାମ୍ବର ଏହି ଦୁଇ ଗୋଷ୍ଠୀ ପକ୍ଷରୁ ଧର୍ମ ବିଷୟକ ଗ୍ରନ୍ଥମାନ ଲେଖାହେଲା ।

ଦିଗାମ୍ବରମାନେ ଶ୍ୱେତାମ୍ବରମାନଙ୍କ ଧର୍ମଗ୍ରନ୍ଥ ଗୁଡ଼ିକୁ ଅବମାନନା କଲେ । ସେମାନେ କହିଲେ, ମହାବୀରଙ୍କ ନିର୍ବାଣ ପରେ ପ୍ରକୃତ ଧର୍ମଗ୍ରନ୍ଥଗୁଡ଼ିକ ଲୋପ ପାଇଗଲା ।

ଦିଗାମ୍ବରମାନେ କହନ୍ତି ଯେ, ଜୈନ ସାଧୁମାନେ ସର୍ବସ୍ୱ ତ୍ୟାଗ କରିବା ଉଚିତ । ଏପରିକି ଦେହରେ ବସ୍ତ୍ର ରଖିବାକୁ ସେମାନେ ବିରୋଧ କରନ୍ତି । ଦିଗାମ୍ବରମାନଙ୍କ ମତରେ, ସିଦ୍ଧ-ପୁରୁଷ ଖାଦ୍ୟପେୟ ମଧ୍ୟ ବର୍ଜନ କରିବା ବାଞ୍ଛନୀୟ । ଏମାନଙ୍କ ମତରେ, ନାରୀମାନେ ପୁନର୍ବାର ପୁରୁଷ ଭାବରେ ଜନ୍ମଲାଭ ନ କରିବା ପର୍ଯ୍ୟନ୍ତ ସେମାନଙ୍କ ମୋକ୍ଷ ଗତି ନାହିଁ ।

କିନ୍ତୁ ଶ୍ୱେତାମ୍ବରମାନେ ଶ୍ୱେତବସ୍ତ୍ର ପରିଧାନ କରିବା ସପକ୍ଷରେ ମତ ଦିଅନ୍ତି । ଏହି ସଂପ୍ରଦାୟ ଦିଗମ୍ବରମାନଙ୍କ ପରି କଠିନ ଆଚରଣ କରିବାର ପକ୍ଷପାତୀ ନୁହନ୍ତି । ପୁଣି ନାରୀମାନେ ନିଜ କର୍ମ ବଳରେ ମୋକ୍ଷଗତି ଲାଭ କରିପାରିବେ ବୋଲି ଏମାନଙ୍କର ବିଶ୍ୱାସ ।

ଏସବୁ ସତ୍ତ୍ୱେ ଉଭୟ ଗୋଷ୍ଠୀ ଧର୍ମର ମୂଳତତ୍ତ୍ୱକୁ ମାନି ଚଳନ୍ତି ଏବଂ ମହାବୀର ଜିନଙ୍କର ଉପଦେଶାବଳୀକୁ ଅମାନ୍ୟ କରନ୍ତି ନାହିଁ । କେବଳ ବିଶ୍ୱାସ ଓ ଚଳଣିରେ ଉଭୟ ଗୋଷ୍ଠୀ ମଧ୍ୟରେ କେତେକ ପ୍ରଭେଦ ପରିଲକ୍ଷିତ ହୋଇଥାଏ ।

ଦିଗାମ୍ବରମାନେ ଦକ୍ଷିଣ ଭାରତରେ ନିଜର ପ୍ରଭାବ ବିସ୍ତାର କରିଥିଲାବେଳେ, ଶ୍ୱେତାମ୍ବରମାନେ ବସ୍ତୁତଃ ଉତ୍ତର ଭାରତରେ ନିଜର ପ୍ରାଧାନ୍ୟ ବଜାୟ ରଖିଥିଲେ ।

ଶ୍ୱେତାମ୍ବର ଗୋଷ୍ଠୀର ଜୈନମାନେ ନାରୀମାନଙ୍କୁ ପୁରୁଷଙ୍କ ପରି ସମାନ ଧର୍ମ ଅଧିକାର ପ୍ରଦାନ କରୁଥିଲେ; କିନ୍ତୁ ଦିଗାମ୍ବରମାନେ ଏହାର ଘୋର ବିରୋଧୀ ଥିଲେ । ନାରୀମାନେ ସାଧାରଣତଃ ଦୁର୍ବଳା ଏବଂ ଉଲଗ୍ନ ଭାବରେ ବିଚରଣ କରିବାରେ ଅସମର୍ଥା ବୋଲି ମୋକ୍ଷପ୍ରାପ୍ତିର ଅନୁପଯୁକ୍ତା— ଏହି ଧାରଣା ଦିଗାମ୍ବର ଗୋଷ୍ଠୀର ଥିଲା ।

## ଜୈନ ଧର୍ମର ତିନି ନୀତି :
## ଅହିଂସା, ଅପରିଗ୍ରହ ଓ ଅନେକାନ୍ତ

ମହାବୀର ଜିନ ଜୀବଜଗତର କଲ୍ୟାଣ ପାଇଁ ଯେଉଁ ନୀତିମାନ ପ୍ରଚାର କରିଥିଲେ, ତନ୍ମଧ୍ୟରୁ ଅହିଂସା, ଅପରିଗ୍ରହ ଓ ଅନେକାନ୍ତ, ଏହି ତିନି ନୀତି ଉଲ୍ଲେଖଯୋଗ୍ୟ ।

ଜୈନ ଦର୍ଶନ ଅନୁଯାୟୀ ପୃଥିବୀ ଜୀବ ଓ ଜଡ଼ଜଗତ ଦ୍ୱାରା ଗଠିତ । ଶରୀର ମଧ୍ୟରେ ଜୀବ ରହିଛି । ଏହି ଜୀବ କେବଳ ମଣିଷ ଭିତରେ ନୁହେଁ, ପଶୁପକ୍ଷୀ, କୀଟପତଙ୍ଗ, ସରିସୃପ, ସ୍ଥାବର ଜଙ୍ଗମ ପ୍ରଭୃତି ସମସ୍ତଙ୍କ ଶରୀରରେ ବିଦ୍ୟମାନ । ତେଣୁ କୌଣସି ଜୀବ ପ୍ରତି ହିଂସା ଆଚରଣ ନ କରିବାକୁ ଏହି ଧର୍ମରେ କୁହାଯାଇଛି । ତେଣୁ କେବଳ ମନୁଷ୍ୟ ଜାତି ନୁହେଁ, ପୃଥିବୀର ସମସ୍ତପ୍ରକାର ଜୀବମାନଙ୍କର ରକ୍ଷାପାଇଁ ଏ ଧର୍ମରେ ସୂଚେଇ ଦିଆଯାଇଛି ।

ମହାବୀର ଜିନ କହିଛନ୍ତି, ବିନା କାରଣରେ ଗଛରୁ ପତ୍ରଟିଏ ମଧ୍ୟ ଛିଣ୍ଡାଇବା ଅନୁଚିତ । କାରଣ ଗଛର ମଧ୍ୟ ଜୀବନ

ଅଛି । ଆତ୍ମଜ୍ଞାନ ସର୍ବ ଜ୍ଞାନର ପରିମାପକ—ଏହି ନ୍ୟାୟରେ ଅନ୍ୟ କାହାରି ପ୍ରତି ହିଂସା ଆଚରଣ କରିବା ଅନୁଚିତ ।

ଖାଲି ସେତିକି ନୁହେଁ, ଜୈନଶାସ୍ତ୍ରରେ ଉଲ୍ଲେଖ ଅଛି, କେବଳ ବଂଶ ରହିବା ମନୁଷ୍ୟର କାମ୍ୟ ହେବା ଉଚିତ ନୁହେଁ । ଅନ୍ୟକୁ ମଧ୍ୟ ବଂଚାଇବା ପାଇଁ ସର୍ବଦା ଚେଷ୍ଟା କରିବା ବାଞ୍ଛନୀୟ ।

ଏହିପରି ଭାବରେ ଜୈନଧର୍ମରେ ଅହିଂସା ନୀତିର ବ୍ୟାଖ୍ୟା କରାଯାଇଛି ।

ଜୈନଧର୍ମର 'ଅହିଂସା' ପରି 'ଅପରିଗ୍ରହ' ନୀତିର ମଧ୍ୟ ଉଲ୍ଲେଖ ଅଛି । ଏଥିରେ କୁହାଯାଇଛି ଯେ, ଗୃହସ୍ଥମାନେ ପରିଗ୍ରହ ବା ଧନ ସଂଗ୍ରହ କରିବାରେ ବାଧାନାହିଁ; କିନ୍ତୁ ତାହା ଆବଶ୍ୟକତା ଦୃଷ୍ଟିରୁ ଅଧିକ ହେବା ଅନୁଚିତ । ତେଣୁ ଧନ ସଂଗ୍ରହର ସୀମା ରହିବା ଉଚିତ । ଧନ ସଂଗ୍ରହର ବଳବତ୍ତି ଇଚ୍ଛା ମନୁଷ୍ୟର ଅଧପତନର ମୂଳ କାରଣ ଅଟେ । ନିର୍ଲୋଭ ମଣିଷ ସ୍ୱର୍ଗସୁଖ ଭୋଗ କରିଥାଏ ।

ଜୈନଧର୍ମର ତୃତୀୟ ପ୍ରଧାନ ନୀତି ହେଲା, 'ଅନେକାନ୍ତ' । ଏହାର ଅର୍ଥ ହେଲା, ସାପେକ୍ଷ ଦୃଷ୍ଟିରେ ପ୍ରତ୍ୟେକ ବିଷୟର ବିଚାର କରିବା ଉଚିତ । 'ତପସ୍ୟା କଲେ ଜୀବ ମୋକ୍ଷ ଗତି ଲାଭ କରିପାରେ' । ଏହି ଉକ୍ତି 'ଅନେକାନ୍ତ' ହୋଇପାରେ; କିନ୍ତୁ ଏକାନ୍ତ ନୁହେଁ । ଜଣେ ଲୋକ ତପସ୍ୟା ନ କରି, ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖି, ସମସ୍ତଙ୍କ ପ୍ରତି ସମଭାବନା ପ୍ରକାଶ କଲେ ମଧ୍ୟ ସେ ମୋକ୍ଷଗତି ଲାଭ କରିପାରେ ନାହିଁ । 'କେବଳ

ତପସ୍ୟା ଦ୍ୱାରା ମୋକ୍ଷଲାଭ ହୁଏନାହିଁ’ । ଏହି ସିଦ୍ଧାନ୍ତ ହେଉଛି ଜୈନଶାସ୍ତ୍ର ବର୍ଣ୍ଣିତ ‘ଅନେକାନ୍ତ ।’

## ଜୈନଧର୍ମରେ ଈଶ୍ୱର ପ୍ରସଙ୍ଗ

ହିନ୍ଦୁମାନେ ଈଶ୍ୱରଙ୍କୁ ବିଶ୍ୱାସ କରିଥାନ୍ତି । ସେ ସର୍ବଜ୍ଞ, ସର୍ବଦର୍ଶୀ ଓ ସର୍ବଜାଣ ଭାବରେ ପ୍ରତିଷ୍ଠିତ । ସୃଷ୍ଟି-ପାଳନ ଓ ସଂହାରର ଆଦିକର୍ତ୍ତା ଭାବରେ ହିନ୍ଦୁମାନେ ଈଶ୍ୱରଙ୍କୁ ପୂଜା ଉପାସନା କରିଥାନ୍ତି ।

କିନ୍ତୁ ଜୈନଧର୍ମରେ ଈଶ୍ୱରଙ୍କୁ ସୃଷ୍ଟିକର୍ତ୍ତା ରୂପେ ଗ୍ରହଣ କରା ଯାଇନାହିଁ । ଜୈନଧର୍ମର ତୀର୍ଥଙ୍କରମାନେ ସର୍ବଜ୍ଞ, ସର୍ବଦର୍ଶୀ ଓ ମୋକ୍ଷ ମାର୍ଗର ମହାନ ପ୍ରବର୍ତ୍ତକ ଭାବରେ ଗୃହୀତ । ଜୈନମାନେ ତୀର୍ଥଙ୍କରମାନଙ୍କର ପୂଜା ଉପାସନା କରିଥାନ୍ତି ।

ଅର୍ଥାତ୍ ‘ଜୈନଧର୍ମରେ ତୀର୍ଥଙ୍କରରୂପୀ ଭଗବାନଙ୍କୁ ସୃଷ୍ଟିକର୍ତ୍ତା କୁହା ନ ଯାଇ ମୋକ୍ଷମାର୍ଗର ପ୍ରଦର୍ଶକ ବୋଲି କୁହାଯାଇଛି । ଭଗବାନ ସୃଷ୍ଟିକର୍ତ୍ତା ନୁହଁନ୍ତି, ସତ୍‌ମାର୍ଗର ପ୍ରଦର୍ଶକ ଅଟନ୍ତି ।

ଜୈନମାନଙ୍କ ମତରେ ଏହି ସଂସାର ଅନାଦି କାଳରୁ ରହିଆସିଛି ଏବଂ ଜୀବର ଜନ୍ମ ମରଣ ଅନାଦି କାଳରୁ ଲାଗି ରହିଛି ।

ଜୈନମାନେ କହନ୍ତି, ଯେପରି ବୀଜ ହେଉଛି ବୃକ୍ଷର କାରଣ, ଠିକ୍ ସେହିପରି ଜୀବର ନିଜ କର୍ମ ବନ୍ଧନ ହିଁ ସଂସାରର କାରଣ ଅଟେ ।

ଜୈନଶାସ୍ତ୍ର ଅନୁଯାୟୀ, ଜୈନଧର୍ମ ଅନାଦିକାଳରୁ ରହି ଆସିଛି । ଭଗବାନ ମହାବୀରଙ୍କ ପରି ଅନେକ ତୀର୍ଥଙ୍କର ହୋଇ ଅଛନ୍ତି । ଭବିଷ୍ୟତରେ ମଧ୍ୟ ଆହୁରି ଅନେକ ତୀର୍ଥଙ୍କର ହେବେ ।

ଏହିପରି ଭାବରେ ଦେଖିବାକୁ ଗଲେ, ଜୈନଧର୍ମର କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ଜୈନଧର୍ମରେ 'ଈଶ୍ୱର' ବା 'ଭଗବାନ' ବୋଲି ଗ୍ରହଣ କରାଯାଇ ନାହିଁ ।

ତେଣୁ ଜୈନଧର୍ମ ଗୋଟିଏ ନୁହେଁ, ଅନେକ ଈଶ୍ୱର (ଭଗବାନ)ରେ ବିଶ୍ୱାସ କରେ ।

ମୋକ୍ଷପଦ ଲାଭ କରିବା ପାଇଁ ଯୋଗ୍ୟ ଯେ କୌଣସି ଜୀବ ସତ୍‌ମାର୍ଗରେ ରହି ନିଜର ପୁରୁଷାକାର ଦ୍ୱାରା ସ୍ୱ-ଆତ୍ମାକୁ ପରମାତ୍ମା କରିପାରେ ।

ଜୈନଧର୍ମରେ ମୋକ୍ଷଲାଭ ପାଇଁ ଏକ ନୁହେଁ ଅନେକ ଯୋଗ ବା ଉପାୟ ରହିଛି । ଏହି ଯୋଗ ବା ଉପାୟ ମଧ୍ୟରୁ ଯେ କୌଣସି ଗୋଟିଏ ମାର୍ଗରେ ପରିଚାଳିତ ହେଲେ ଓ ଶାସ୍ତ୍ର ନିୟମ ଅନୁସାରେ ନିଜକୁ ନିୟନ୍ତ୍ରିତ କଲେ, ମଣିଷ ମୋକ୍ଷଲାଭ କରିପାରିବ । ସାଧାରଣ ଆତ୍ମା 'କେବଳ ଜ୍ଞାନ' ବଳରେ ସଂପୂର୍ଣ୍ଣ ହୋଇ ପାରିବ ।

## ଜୈନ ଦର୍ଶନରେ ଆତ୍ମା ଓ ପରମାତ୍ମା

ଜୈନଧର୍ମ ଦର୍ଶନ ଅନୁସାରେ ଜୀବ ଅନାଦିକାଳରୁ ରହିଛି । ସେ କର୍ମ କରି ଆସୁଛି ଓ ନିଜେ ନିଜର କୃତକର୍ମର ଫଳ ଭୋଗକରି ଆସୁଛି ।

କର୍ମ ହିଁ ଜୀବକୁ ବନ୍ଧନରେ ଆବଦ୍ଧ କରେ ଓ କର୍ମ ହିଁ ତାକୁ ସଂସାର ଚକ୍ରରେ ଘୂରାଏ ।

ଆତ୍ମା ନିଜର କର୍ମଯୋଗୁଁ ବନ୍ଧନରେ ପଡ଼େ ଓ କୃତ-କର୍ମର ଫଳ ଭୋଗକରେ । ଫଳ ଭୋଗ ନ କରିବା ପର୍ଯ୍ୟନ୍ତ ତାକୁ ମୁକ୍ତି ମିଳେନାହିଁ ।

ଯେ ପର୍ଯ୍ୟନ୍ତ ଜୀବ ନିଜର କୃତକର୍ମ ବନ୍ଧନରେ ପଡ଼ି-ରହେ, ସେପର୍ଯ୍ୟନ୍ତ ତାକୁ ବିଭିନ୍ନ ଜନ୍ମ ନେଇ ସଂସାର ପରିଭ୍ରମଣ କରିବାକୁ ପଡ଼ିଥାଏ; ମାତ୍ର ଯେତେବେଳେ ତା'ର ଜ୍ଞାନ ଚେତନା ଜାଗ୍ରତ ହୁଏ, ସେ କର୍ମକୁ ନିୟନ୍ତ୍ରିତ କରେ ଓ ତପସ୍ୟା ଆଦି କାର୍ଯ୍ୟ ଦ୍ୱାରା ପୂର୍ବ ସଂଚିତ କର୍ମକୁ ନଷ୍ଟ କରି ପକାଏ । ଏହି ସମୟରେ ସେ ମୋକ୍ଷଗତି ଲାଭକରେ ।

ମୋକ୍ଷଗତି ଲାଭ କରିଥିବା ମୁକ୍ତଜୀବ ଜୈନଧର୍ମମତେ ଜିନ ବା ଭଗବାନ ପଦ ଲାଭକରେ । ସେ ଆଉ କୌଣସି ସାଂସାରିକ ବନ୍ଧନରେ ପଡ଼େନାହିଁ କିମ୍ବା ମୋକ୍ଷ ପଦରୁ ପ୍ରତ୍ୟା-ବର୍ତ୍ତନ କରି କେବେହେଲେ ସଂସାରରେ ଜନ୍ମଗ୍ରହଣ କରେନାହିଁ । ସେ ଅନନ୍ତ କାଳ ପର୍ଯ୍ୟନ୍ତ ଅପ୍ରତିହତ ଅନନ୍ତ ଜ୍ଞାନ ଦର୍ଶନ ସଂପନ୍ନ ହୋଇ ସମାଜରେ ଦେଖାଦିଏ ।

ଏହି ବିମୁକ୍ତ ଆତ୍ମା ଜନ୍ମ-ମୃତ୍ୟୁ ନିୟମ ଲଙ୍ଘନ କରି ମୁକ୍ତ ରାଜ୍ୟରେ ବିଚରଣ କରେ ।

ଜୈନଶାସ୍ତ୍ରରେ ସେହି 'ମୁକ୍ତ ରାଜ୍ୟ'ର ବର୍ଣ୍ଣନା କରି କୁହାଯାଇଛି, ସେଠାରେ ତର୍କର ସ୍ଥାନ ନାହିଁ । ସେଠାରେ ବୁଦ୍ଧିର ପ୍ରବେଶ ନାହିଁ । ସେହି ମୁକ୍ତ ଆତ୍ମା ଜ୍ୟୋତିର୍ମାନ ଅଟେ ।

ସେ ସ୍ତ୍ରୀ ନୁହେଁ କି ପୁରୁଷ ନୁହେଁ । ତା'ର ଅନ୍ୟ କୌଣସି ରୂପ ନାହିଁ; ମାତ୍ର ସମସ୍ତ ପଦାର୍ଥର ଯେଉଁ ସ୍ୱରୂପ ଅଛି, ସେ ସମସ୍ତଙ୍କର ମହାନ୍ ଜ୍ଞାତା । ତା'ର କୌଣସି ଆକାର ନାହିଁ କି ଉପମା ନାହିଁ । ତାହା ଅରୂପ, ନିରାକାର ଓ ଅନିର୍ଦ୍ଦେଶ୍ୟ । ସେ ଶବ୍ଦ ନୁହେଁ, ରୂପ ନୁହେଁ, ରସ ନୁହେଁ କି ଗନ୍ଧ ନୁହେଁ । ସେ ସମ୍ପୂର୍ଣ୍ଣ ସ୍ପର୍ଶହୀନ ।

## ଜୈନ ଧର୍ମଗ୍ରନ୍ଥ

ଜୈନଧର୍ମରେ ପ୍ରାକୃତ ଭାଷାରେ ରଚିତ ବହୁ ଗ୍ରନ୍ଥ ଦେଖିବାକୁ ମିଳିଥାଏ । ସେହି ଗ୍ରନ୍ଥମାନଙ୍କରୁ ଅଧିକାଂଶ ଶେଷ ତୀର୍ଥଙ୍କର ମହାବୀରଙ୍କର ଉପଦେଶାବଳୀରେ ପରିପୂର୍ଣ୍ଣ ।

ଜୈନଧର୍ମାବଲମ୍ବୀମାନେ ମହାବୀର ଜିନଙ୍କ ଉପଦେଶାବଳୀକୁ ଜୀବନର ମାର୍ଗ ରୂପେ ଗ୍ରହଣ କରିଥାନ୍ତି । ଶ୍ୱେତାମ୍ବର ଓ ଦିଗାମ୍ବର ଉଭୟ ପନ୍ଥୀ ମହାବୀରଙ୍କ ଉପଦେଶାବଳୀକୁ ସମ୍ମାନ ଦେଇଥାନ୍ତି ।

କିନ୍ତୁ ଜୈନଧର୍ମର ଆଦ୍ୟ ଗ୍ରନ୍ଥମାନ ଲୋପପାଇ ଯାଇଥିବା ବିଷୟ ଆଲୋଚକମାନେ ପ୍ରକାଶ କରନ୍ତି ।

ପରବର୍ତ୍ତୀ କାଳରେ ଜୈନଧର୍ମ ଅନ୍ୟାନ୍ୟ ଧର୍ମର ମୁକାବିଲା କରିବା ପାଇଁ କେତେଗୁଡ଼ିଏ ସଂସ୍କୃତ ପରିଭାଷା ଗ୍ରହଣ କରିଥିଲା । ହିନ୍ଦୁ ଧର୍ମ ଇତିହାସରୁ ଜଣାଯାଏ ଯେ, ପ୍ରତ୍ୟେକ ଧର୍ମ ନିଜକୁ ଅନ୍ୟ ଧର୍ମର ସମାଲୋଚନାରୁ ମୁକ୍ତ କରିବାକୁ ପ୍ରସ୍ତୁତ ହୋଇଥାନ୍ତି । ତେଣୁ ନିଜ ଧର୍ମ ଦର୍ଶନର

ସମ୍ଭାବ୍ୟ ବିରୋଧରୁ ନିଜକୁ ରକ୍ଷା କରିବା ନିମନ୍ତେ ଅନେକ ଅନେକ ସୂକ୍ତସଂଗତ ଆଲୋଚନା ଉପସ୍ଥାପନ କରିଥାନ୍ତି । ଏହିପରି ଭାବରେ ଧର୍ମଗ୍ରନ୍ଥମାନ ପ୍ରସାରିତ ହୋଇଥାଏ । ଜୈନଧର୍ମ ଇତିହାସରେ ମଧ୍ୟ ଏହାର ଦୃଷ୍ଟାନ୍ତ ଦେଖାଯାଏ । ସମ୍ଭାବ୍ୟ ବିରୋଧରୁ ନିଜକୁ ରକ୍ଷା କରିବା ପାଇଁ ଓ ସ୍ୱ-ଧର୍ମର ପ୍ରତିଷ୍ଠା ବଜାୟ ରଖିବା ପାଇଁ, ଜୈନଧର୍ମ ସଂସ୍କୃତ ଭାଷାର ସାହାଯ୍ୟ ଗ୍ରହଣ କରିଥିଲା । ଏହିପରି ଭାବରେ ଜୈନଧର୍ମ ଗ୍ରନ୍ଥମାନ ପ୍ରାକୃତ ଓ ସଂସ୍କୃତ ଉଭୟ ଭାଷାରେ ରଚିତ ହେଲା ।

ଜୈନ ଧର୍ମଗ୍ରନ୍ଥ ମଧ୍ୟରେ ଅଙ୍ଗ, ଉପାଙ୍ଗ ଓ ମୂଳସୂତ୍ର ପ୍ରଧାନ ଅଟେ ।

## ଜୈନଧର୍ମ ଓ ହିନ୍ଦୁଧର୍ମ

ଜୈନଧର୍ମ ଓ ବୌଦ୍ଧଧର୍ମ ଭାରତର ବ୍ରାହ୍ମଣ୍ୟ ଧର୍ମର ଆଧିପତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରତିଷ୍ଠା ପାଇଥିଲେ ହେଁ, ବୌଦ୍ଧଧର୍ମ ଭଳି ଭାରତର ଜୈନଧର୍ମ ବ୍ରାହ୍ମଣ୍ୟ ଧର୍ମର କଠୋର ବିରୋଧୀ ନ ଥିଲା ।

ଜୈନଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ କେତେକ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ଜନ୍ମାନ୍ତରବାଦ ଓ କର୍ମଫଳରେ ଉଭୟ ହିନ୍ଦୁଧର୍ମ ଓ ଜୈନଧର୍ମ ବିଶ୍ୱାସ ସ୍ଥାପନ କରନ୍ତି । ଅହିଂସା ଜୈନଧର୍ମର ମୂଳମନ୍ତ୍ର । ଏହା ହିନ୍ଦୁମାନଙ୍କର ଉପନିଷଦ ମଧ୍ୟରେ ନିହିତ ।

ସତ୍ ଜୀବନଯାପନକୁ ଉଭୟ ହିନ୍ଦୁଧର୍ମ ଓ ଜୈନଧର୍ମ ମାନ୍ୟତା ପ୍ରଦାନ କରନ୍ତି ।

ଦୁଃଖ, ଆଶା ଓ ନିର୍ବାଣ ବିଷୟରେ ଜୈନମାନେ ଯେପରି ବିଶ୍ୱାସୀ, ହିନ୍ଦୁମାନଙ୍କର ସାଂଖ୍ୟ ଦର୍ଶନରେ ସେହିପରି ବିଶ୍ୱାସ ସ୍ଥାପନ କରାଯାଇଛି, ଏପରିକି ଜୈନମାନଙ୍କର ନିରୀଶ୍ୱରବାଦ ହିନ୍ଦୁ ସାଂଖ୍ୟ ଦର୍ଶନରେ ସ୍ଥାନ ଲାଭ କରିଛି । ତେବେ ସାଂଖ୍ୟର ପୁରୁଷ ଓ ଜୈନଧର୍ମର ଜୀବ ମଧ୍ୟରେ କେତେକ ପ୍ରଭେଦ ରହିଛି । ସାଂଖ୍ୟର 'ପୁରୁଷ' ଶକ୍ତିହୀନ ଜଡ଼ପିଣ୍ଡ ଥିଲାବେଳେ, ଜୈନମାନଙ୍କର 'ଜୀବ' ଜୀବିତ ।

ଜିନଙ୍କୁ ଅନେକ ହିନ୍ଦୁ ଶିବ ବୋଲି ଧାରଣା କରୁଥିଲେ । ଶୈବଧର୍ମ ଅପେକ୍ଷା ହିନ୍ଦୁ ବୈଷ୍ଣବମାନେ ଜୈନମାନଙ୍କୁ ଓ ଜୈନଧର୍ମକୁ ଅଧିକ ପସନ୍ଦ କରୁଥିଲେ । କାରଣ ବୈଷ୍ଣବମାନେ ଜୈନମାନଙ୍କ ପରି ଜୀବ ହିଂସା ବିରୋଧୀ ଓ ଜୀବ ପ୍ରତି ଦୟାକୁ ପରମ ଧର୍ମ ବୋଲି ଗ୍ରହଣ କରନ୍ତି । ପୁଣି ଜୈନମାନଙ୍କ ପରି ବୈଷ୍ଣବମାନେ ଜାତି ବିଗ୍ରହ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି । ଜୈନ ଓ ବୈଷ୍ଣବ ଏହି ଉଭୟ ଧର୍ମରେ ଉଚ୍ଚ ନୀଚ, ଧନୀ ନିର୍ଦ୍ଧନର ବାଛ ବିଗ୍ରହ ନ ଥିଲା ।

ହିନ୍ଦୁମାନଙ୍କ ପରି ଜୈନମାନଙ୍କର ଧର୍ମ ମନ୍ଦିର ଥିଲା ଓ ହିନ୍ଦୁ ଦେବ ଦେବୀମାନଙ୍କ ପରି ଜୈନ ମନ୍ଦିରମାନଙ୍କରେ ତୀର୍ଥଙ୍କରମାନଙ୍କର ପୂଜା ଉପାସନା ହେଉଥିଲା ।

ପୂଜା ଉପାସନାବେଳେ ଶ୍ୱେତାମ୍ବରମାନେ ବ୍ରାହ୍ମଣ ପୂଜକ ନିଯୁକ୍ତ କରୁଥିଲେ । ଏହା ହିନ୍ଦୁ ଓ ଜୈନଧର୍ମାବଲମ୍ବୀମାନଙ୍କ

ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା କରୁଥିଲା । ଜୈନମାନେ ହିନ୍ଦୁ ପୂଜା ପଦ୍ଧତି ଅନୁସାରେ ଜିନମାନଙ୍କର ପୂଜା ଆରାଧନା କରୁଥିଲେ ।

କାଳକ୍ରମେ ହିନ୍ଦୁମାନେ ଜୈନତୀର୍ଥଙ୍କର (ଜିନ)ମାନଙ୍କୁ ଭକ୍ତି କଲେ । ଜୈନମାନେ ମଧ୍ୟ ହିନ୍ଦୁ ରୀତିନୀତି ଦ୍ୱାରା ପ୍ରଭାବିତ ହେଲେ । ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ ଯେ, ମଧ୍ୟ-ଯୁଗରେ ୟୁରୋପରେ ସଂଘଟିତ ଧର୍ମଯୁଦ୍ଧ ପରି ଭାରତରେ ହିନ୍ଦୁ ଓ ଜୈନମାନଙ୍କ ମଧ୍ୟରେ କୌଣସି ଧର୍ମଯୁଦ୍ଧ ଘଟି ନ ଥିଲା । ପରସ୍ପରର ସହନଶୀଳତା ଓ ସହାବସ୍ଥାନ ମଧ୍ୟରେ ଉଭୟ ଧର୍ମର ବିକାଶ ଘଟିଥିଲା ।

## ଜୈନଧର୍ମାବଲମ୍ବୀମାନଙ୍କର ଜୀବନଯାତ୍ରା

ଭାରତର ରାଜସ୍ଥାନ ଓ ଗୁଜୁରାଟ ଅଞ୍ଚଳରେ ଏବେ ଜୈନଧର୍ମାବଲମ୍ବୀମାନେ ବହୁ ସଂଖ୍ୟାରେ ବସବାସ କରୁଥିବା ଦେଖିବାକୁ ମିଳେ ।

ହିନ୍ଦୁଧର୍ମାବଲମ୍ବୀମାନଙ୍କ ପରି ଜୈନମାନଙ୍କର ସ୍ୱତନ୍ତ୍ର ଧର୍ମ ମନ୍ଦିରମାନ ଅଛି । ସେଠାରେ ସେମାନେ ସଂଘବଦ୍ଧ ଭାବରେ ଉପାସନା କରିଥାନ୍ତି ।

ଜୈନ ଶ୍ରମଣମାନେ ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଜୀବନଯାପନ କରିଥାନ୍ତି । ବର୍ଷା ଋତୁରେ ସେମାନେ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ଚତୁର୍ମାସିଆ ବ୍ରତ ପାଳନ କରିଥାନ୍ତି । ଶ୍ରମଣ-ମାନେ ସଦାଚାର ବ୍ରତ ପାଳନ କରନ୍ତି । ସଦ୍‌ବ୍ୟବହାର ନିମନ୍ତେ ଏମାନେ ଜନସାଧାରଣଙ୍କ ଶ୍ରଦ୍ଧାଭାଜନ ହୋଇଥାନ୍ତି ।

ଜୈନଧର୍ମର ସାଧାରଣ ଭକ୍ତମାନଙ୍କୁ ଶ୍ରାବକ କୁହାଯାଏ । ଏମାନେ ନିଜ ଧର୍ମର ମତମାନ ଶ୍ରବଣ କରି ଏମାନଙ୍କ ସାମାଜିକ ଜୀବନକୁ ପରିଚାଳିତ କରିଥାନ୍ତି । ଏଥିପାଇଁ ସେମାନେ ଯେତେ କଷ୍ଟ ପଡ଼ିଲେ ବି ସହ୍ୟ କରିଥାନ୍ତି ।

ଜୈନଧର୍ମାବଲମ୍ବୀମାନେ ସିଦ୍ଧପୁରୁଷ, ଆଚାର୍ଯ୍ୟ, ଉପାଧ୍ୟାୟ ତଥା ସାଧୁସନ୍ନ୍ୟାସୀଙ୍କ ପ୍ରତି ବିଶେଷ ଭକ୍ତି ଓ ଶ୍ରଦ୍ଧା ଜ୍ଞାପନ କରିଥାନ୍ତି । ସେମାନେ ଚବିଶତୀର୍ଥଙ୍କରଙ୍କୁ କେବଳ ସମ୍ମାନ ପ୍ରଦର୍ଶନ କରନ୍ତି ନାହିଁ, ସେମାନଙ୍କର ପୂଜା ଉପାସନା ମଧ୍ୟ କରିଥାନ୍ତି । ଏମାନେ ବିଶ୍ୱାସ କରନ୍ତି ଯେ, ତୀର୍ଥଙ୍କରଗଣ ମାନବ ରୂପରେ ଧରାପୃଷ୍ଠକୁ ଆସି ଧର୍ମ ପ୍ରଚାର କରିଥିଲେ । ସେମାନେ ସାଂସାରିକ ମାୟା ବନ୍ଧନରୁ ମୁକ୍ତହୋଇ ଜନ୍ମ-ଜରା ଓ ମୃତ୍ୟୁ-ଚକ୍ରଠାରୁ ଦୂରେଇ ଯାଇ ମୋକ୍ଷଲାଭ କରିଛନ୍ତି ।

ଜୈନଧର୍ମାବଲମ୍ବୀମାନେ ଜୀବନରେ ଅହିଂସାବ୍ରତକୁ ଯଥେଷ୍ଟ ଗୁରୁତ୍ୱ ଦେଇଥାନ୍ତି । ଜୀବ ହତ୍ୟାରୁ ନିବୃତ୍ତ ରହିବା ପାଇଁ ସେମାନେ ଖୁବ୍ ସାବଧାନତା ସହକାରେ ଚଳପ୍ରଚଳ ହୁଅନ୍ତି । ପାଦରେ କ୍ଷୁଦ୍ର ଜୀବମାନେ ଦଳି ହୋଇଯିବା ଆଶଙ୍କାରେ ଭୂମିକୁ ବାରମ୍ବାର ପରୀକ୍ଷା ନିରୀକ୍ଷା କରିଥାନ୍ତି । କୌଣସି ଜୀବ ନାସା ଗହ୍ୱରରେ କିମ୍ବା ମୁଖରେ ପ୍ରବେଶ କରି ଜୀବନ ହରାଇପାରେ, ଏହି ଆଶଙ୍କାରେ ମୁଖମଣ୍ଡଳରେ ବସ୍ତ୍ର ବାନ୍ଧନ୍ତି । ଏକାନ୍ତ ଅନୁଗତ ଜୈନଧର୍ମାବଲମ୍ବୀମାନେ ଜଳକୁ ଉତ୍ତମ ରୂପେ ଛାଣି ପାନ କରିଥାନ୍ତି । ଏମାନେ ରାତିରେ ଖାଆନ୍ତିନାହିଁ ଏବଂ କାଳେ ପୋକଜୋକ ପଡ଼ି ନଷ୍ଟ ହୋଇଯିବେ, ସେହି ଭୟରେ ରାତିରେ ଦୀପ ଜାଳନ୍ତି ନାହିଁ ।

ଜୈନମାନେ ସର୍ବତ୍ର ଜୀବନର ସତ୍ତା ଉପଲବ୍ଧି କରନ୍ତି । ସେମାନଙ୍କ ମତରେ ଜଳ, ଅଗ୍ନି, ବାୟୁ, ବୃକ୍ଷ ଇତ୍ୟାଦି ସମସ୍ତଙ୍କର ଜୀବନ ଅଛି ।

ଏମାନେ କର୍ମବାଦରେ ବିଶେଷ ଜୋର ଦେଇଥାନ୍ତି । ପୁନଃର୍ଜନ୍ମରେ ଏମାନଙ୍କର ଗଭୀର ବିଶ୍ୱାସ ରହିଛି । ଏମାନଙ୍କ ମତରେ ମୋକ୍ଷକାମୀ ଜୀବ ସର୍ବଦା ସଂସାର ବନ୍ଧନ, ଭୋଗ ଲାଳସା ତଥା ଆଡ଼ମ୍ବର ଜୀବନ ଯାପନରୁ ଦୂରେଇ ରହିବା ଉଚିତ । ତାହାହେଲେ ଯାଇ ଜୀବନର ନୈତିକ ଉନ୍ନତି ସାଧନ ହୋଇ ପାରିବ ।

ଜୈନମାନେ ବିଶ୍ୱାସ କରନ୍ତି ଯେଉଁବ୍ୟକ୍ତି ସଂସାର ତ୍ୟାଗକରି ସନ୍ନ୍ୟାସ ଗ୍ରହଣ କରିବ, ସେ କେବଳ ଶେଷରେ ମୋକ୍ଷଗତି ଲାଭକରି ପାରିବ ।

ବ୍ରାହ୍ମଣର ବିଦ୍ୟା, ବୌଦ୍ଧର ପ୍ରେମ, ପବିତ୍ରତା ଓ ସନ୍ନ୍ୟାସ ଜୈନର ବ୍ରତ ।

ଜୈନ ଉତ୍ତରାଧ୍ୟୟନରେ କୁହାଯାଇଛି ଯେ, କର୍ମ ହିଁ ଜନ୍ମ ଓ ମୃତ୍ୟୁର ମୂଳ ଆଧାର । ଜନ୍ମ ଓ ମୃତ୍ୟୁ ହିଁ ସଂସାରରେ ଅଶେଷ ଦୁଃଖ ଯନ୍ତ୍ରଣାର କାରଣ । ସମସ୍ତ କର୍ମରୁ ବିମୁକ୍ତ ହେଲେ ଯାଇ ମାନବ ତା'ର ସାଂସାରିକ ଶରୀର ତ୍ୟାଗ କରି ଉଚ୍ଚତମ ଆସନରେ ପ୍ରତିଷ୍ଠା ଲାଭକରେ । ମୁକ୍ତ ଆତ୍ମା ଆଲୋକ, ସୌନ୍ଦର୍ଯ୍ୟ, ପୂର୍ଣ୍ଣତା ଓ ମୁକ୍ତି ଲାଭକରେ ।

ବୀର୍ଯ୍ୟ ଧାରଣ ଜୈନ ସନ୍ନ୍ୟାସୀମାନଙ୍କର କର୍ତ୍ତବ୍ୟର ଏକ ଅଙ୍ଗ । ଏହି ବୀର୍ଯ୍ୟ ସର୍ବଦା ବିଶୁଦ୍ଧ ହେବା ବାଞ୍ଛନୀୟ ।

ଜୈନ ସନ୍ନ୍ୟାସୀମାନେ କଦାପି ଲୋକଙ୍କର ଅନିଷ୍ଟ କାମନା କରନ୍ତି ନାହିଁ । ଆତ୍ମାକୁ କିପରି ମୁକ୍ତ କରିବେ ତାହାହିଁ ସେମାନଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ହୋଇଥାଏ । ତେଣୁ ସେମାନେ ସର୍ବଦା କର୍ମକୁ ଧ୍ୱଂସ କରିବା ପାଇଁ ଚେଷ୍ଟା କରିଥାନ୍ତି ।

ଜିନ ବା ତୀର୍ଥଙ୍କରମାନଙ୍କୁ ମାର୍ଗ ପ୍ରଦର୍ଶକ ଭଗବାନ ଭାବରେ ମାନନ୍ତି । ସେମାନଙ୍କ ଉପାସନା ନିମନ୍ତେ ମନ୍ଦିର ଆଦି ନିର୍ମାଣ କରିଥାନ୍ତି । ଏହି ମନ୍ଦିରରେ ବିଭିନ୍ନ ପୂଜାପାଇଁ ଶ୍ୱେତା-ମ୍ବର ଜୈନମାନେ ବ୍ରାହ୍ମଣ ପୂଜକ ନିଯୁକ୍ତ କରିଥାନ୍ତି । ହିନ୍ଦୁ ପୂଜା ପଦ୍ଧତି ଅନୁସାରେ ଏମାନେ ଜିନମାନଙ୍କର ପୂଜା ଆରାଧନା କରନ୍ତି ।

ଶ୍ୱେତାମ୍ବର ଜୈନମାନେ ନାରୀମାନଙ୍କୁ ସମାନ ଧର୍ମ ଅଧିକାର ପ୍ରଦାନ କରିଥାନ୍ତି; କିନ୍ତୁ ଦିଗାମ୍ବରମାନେ ନାରୀମାନଙ୍କୁ ସମାନ ଧର୍ମ ଅଧିକାରୀ କରିବାରେ ବିରୋଧୀ । ଦିଗାମ୍ବରମାନେ କହନ୍ତି, ନାରୀମାନେ ଉଲଗ୍ନ ରହି ପାରିବେ-ନାହିଁ ଏବଂ ସେମାନେ ସ୍ୱଭାବତଃ ଦୁର୍ବଳା । ତେଣୁ ସେମାନଙ୍କ ପକ୍ଷରେ ମୋକ୍ଷଗତି ଲାଭ କରିବା ଅସମ୍ଭବ । ମୋକ୍ଷଲାଭ ପାଇଁ ନାରୀମାନଙ୍କୁ ପୁରୁଷ ଜନ୍ମ ଲାଭ କରିବାକୁ ପଡ଼ିବ ।

ନିଷ୍ଠାପର ଜୈନମାନେ ଇତର ଶ୍ରେଣୀର ଜୀବଙ୍କ ପ୍ରତି ବିଶେଷ ଦୟା ପ୍ରଦର୍ଶନ କରିଥାନ୍ତି । ପିମ୍ପୁଡ଼ି, ମୂଷା ଇତ୍ୟାଦି ଅନିଷ୍ଟକାରୀ ଜୀବମାନଙ୍କୁ ମଧ୍ୟ ଏମାନେ ପ୍ରତ୍ୟେହ ଆହାର ପ୍ରଦାନ କରନ୍ତି । ବୃଦ୍ଧ, ଅନାଥ, ରୁଗ୍ଣ ପ୍ରାଣୀଙ୍କର ଆଶ୍ରୟ ନିମନ୍ତେ ବିଭିନ୍ନ ଆଶ୍ରମ ଓ ଚିକିତ୍ସାଳୟ ସ୍ଥାପନ କରନ୍ତି ।

ଜୈନମାନେ ଆମିଷ ଭକ୍ଷଣ କରନ୍ତି ନାହିଁ । ଏମାନେ କହନ୍ତି, ଆମିଷ ଭକ୍ଷଣ କେବଳ ଯେ ଜୀବନକୁ କଳୁଷିତ କରେ ତାହା ନୁହେଁ, ମାନବର ସମସ୍ତ କର୍ମକୁ ମଧ୍ୟ ନଷ୍ଟ କରିଥାଏ ।

ଜୈନମାନେ ନଅ ପ୍ରକାର ଉତ୍ତମ କର୍ମ ଓ ଅଠର ପ୍ରକାର ପାପ ବିଷୟରେ ଆଲୋଚନା କରିଥାନ୍ତି । ଜ୍ଞାତ ବା ଅଜ୍ଞାତରେ କରୁଥିବା ବିଭିନ୍ନ ପାପ ପାଇଁ ଜୈନମାନେ ନିଜ ଦୋଷ ସ୍ୱୀକାର କରିବାକୁ ସଙ୍କୋଚ ବୋଧ କରନ୍ତି ନାହିଁ ।

ଦାତା ନିଜ ହସ୍ତରେ ଦାନ କରୁଥିବା ପଦାର୍ଥ ବ୍ୟତୀତ ଅନ୍ୟ ପଦାର୍ଥମାନ ଗ୍ରହଣ କରିବା ଚୋରି ସହିତ ସମାନ ବୋଲି ଜୈନମାନେ ମନେ କରନ୍ତି । ଉପହାର ଗ୍ରହଣ ନର୍କ ଗମନ ସଙ୍ଗେ ସମାନ ବୋଲି ଏମାନଙ୍କ ଧାରଣା ରହିଛି ।

ଜୈନ ସାଧୁମାନେ ଦାନ ଗ୍ରହଣ ପୂର୍ବରୁ ନିଜର ଆବଶ୍ୟକତାକୁ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଧ୍ୟାନ କରନ୍ତି । ସାମାନ୍ୟ ବସ୍ତୁ ଫଳମୂଳ ବ୍ୟତୀତ ଅନ୍ୟବସ୍ତୁ ଦାନ ସୂତ୍ରରେ ଗ୍ରହଣ କରିବା ପାଇଁ କୁଣ୍ଠା ପ୍ରକାଶ କରିଥାନ୍ତି ।

ଜୈନମାନେ ଦେବଗଣଙ୍କ ଅସ୍ତିତ୍ୱ ସ୍ୱୀକାର କରୁଥିଲେ ମଧ୍ୟ ମନେକରନ୍ତି ଯେ, ଦେବଗଣଙ୍କ ଅପେକ୍ଷା ଉତ୍କୃଷ୍ଟ ପୁରୁଷ-ମାନେ ଅଛନ୍ତି । ସେମାନେ କହନ୍ତି, ଦେବଗଣଙ୍କର ମନୁଷ୍ୟ-ମାନଙ୍କ ପରି ପୁନର୍ଜନ୍ମ ରହିଛି । ଦେବତାମାନେ ଅମର ନୁହଁନ୍ତି, ତେବେ ମୋକ୍ଷଲାଭ ପାଇଁ ଉଚିତ କର୍ମ କରିବାକୁ ମନୁଷ୍ୟ ଦେହ ଧାରଣ କରିବାକୁ ପଡ଼େ । କାରଣ ମାନବ

ଜନ୍ମଲାଭ କରିବା ପରେ ହିଁ ମୋକ୍ଷପ୍ରାପ୍ତିର ମାର୍ଗ ସୁଗମ ହୁଏ । ଦେବଲୋକରେ ଏହା ସମ୍ଭବ ନୁହେଁ ।

× × ×

ଅଧୁନା ଜ୍ଞାନୀ ଲୋକମାନେ ଜୈନଧର୍ମର ମତ ନିୟମ ଓ ଉପଦେଶାବଳୀ ପାଠ କରି ଏହି ଧର୍ମପ୍ରତି ଆକୃଷ୍ଟ ହେଉଛନ୍ତି ।

ଅଧିକାଂଶ ସ୍ଥଳରେ ଆଧୁନିକ ହିନ୍ଦୁଧର୍ମ ଓ ଜୈନଧର୍ମ ମଧ୍ୟରେ କୌଣସି ପାର୍ଥକ୍ୟ ପରିଲକ୍ଷିତ ହେଉନାହିଁ । ତେଣୁ ଅନ୍ୟଲୋକେ ମନେ କରୁଛନ୍ତି, ହିନ୍ଦୁଧର୍ମ ଓ ଜୈନଧର୍ମ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

ଜୈନଧର୍ମାବଲମ୍ବୀମାନଙ୍କ ସଂଖ୍ୟା ଭାରତରେ ଅତ୍ୟଳ୍ପ ହେଲେ ମଧ୍ୟ, ପୃଥିବୀର ପ୍ରଧାନ ଧର୍ମମାନଙ୍କ ମଧ୍ୟରେ ଜୈନଧର୍ମ ଅନ୍ୟତମ ପ୍ରଧାନ ଧର୍ମରୂପେ ସ୍ୱୀକୃତି ଲାଭ କରିଛି ।

ଐତିହାସିକମାନେ କହନ୍ତି, ଜୈନଧର୍ମ ପୃଥିବୀର ସର୍ବ-ପ୍ରଥମ ଧର୍ମ । ବୌଦ୍ଧଧର୍ମ ଜୈନଧର୍ମ ପରେ ପ୍ରତିଷ୍ଠା ଲାଭ କରିଥିଲା । ବୌଦ୍ଧଧର୍ମର ସଂସ୍ଥାପକ ଗୌତମବୁଦ୍ଧ ପ୍ରଥମେ ଜୈନଧର୍ମରେ ଦୀକ୍ଷିତ ହୋଇଥିଲେ ଓ ପରେ ସ୍ୱ-ଧର୍ମ ପ୍ରତିଷ୍ଠା କରିଥିଲେ ।

## ଓଡ଼ିଶାରେ ଜୈନଧର୍ମ

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଶତ ଶତ ବର୍ଷ ଧରି ଓଡ଼ିଶାରେ ଜୈନଧର୍ମର ପ୍ରଚାର ଓ ପ୍ରସାର ଘଟିଥିଲା ।

ମହାବୀର ଜିନଙ୍କ କଳିଙ୍ଗ ଆଗମନ ହେତୁ ଏହା ସମ୍ଭବ ହୋଇ ପାରିଥିଲା ।

ଏବେ ମଧ୍ୟ ଓଡ଼ିଶାର ଭୁବନେଶ୍ବର (ଉଦୟଗିରି, ଧଉଳି-ଗିରି), କେଉଁଝର, ମୟୂରଭଞ୍ଜ, ବଲାଙ୍ଗୀର, ସମ୍ବଲପୁର, ବାଲେଶ୍ବର, କଟକ ଓ ପୁରୀ ପ୍ରଭୃତି ଅଞ୍ଚଳରେ ବହୁ ଜୈନଙ୍କୀର୍ତ୍ତି ବିଦ୍ୟମାନ । ଓଡ଼ିଶାରେ ଥିବା 'ନାଥ' ସମ୍ପ୍ରଦାୟ ଏହି ଜୈନଧର୍ମାବଲମ୍ବୀ ବୋଲି କୁହାଯାଏ । ଏମାନେ କଟକ ଜିଲ୍ଲାର ଜଗତସିଂହପୁର ଓ ତତ୍‌ସଂଲଗ୍ନ ଅଞ୍ଚଳରେ ବହୁ ସଂଖ୍ୟାରେ ବସବାସ କରିଥାନ୍ତି । ପୁଣି ଓଡ଼ିଶାରେ 'ମହିମାଧର୍ମ' ଜୈନଧର୍ମର ବଶ୍ବରଧାରା ଉପରେ ପ୍ରତିଷ୍ଠିତ ବୋଲି ପ୍ରସିଦ୍ଧ ଐତିହାସିକ ବି. ସି. ମଜୁମଦାର ପ୍ରକାଶ କରିଛନ୍ତି ।

ମହାବୀର ଜିନ ଓଡ଼ିଶାର 'କୁମାରୀ ପର୍ବତ' (ଭୁବନେଶ୍ବର ନିକଟସ୍ଥ ଆଧୁନିକ ଖଣ୍ଡଗିରି ଓ ଉଦୟଗିରି)ରେ ଧର୍ମ ପ୍ରଚାର କରିଥିବା ପ୍ରମାଣ ଜୈନଶାସ୍ତ୍ରରେ ରହିଛି ।

ରାଜା ଖାରବେଳ ତାଙ୍କ ରାଜତ୍ବର ତ୍ରୟୋଦଶ ବର୍ଷରେ 'କୁମାରୀ' ବା ଓଡ଼ିଶାର 'ଉଦୟଗିରି' ପାହାଡ଼ରେ ଧର୍ମ କାର୍ଯ୍ୟରେ ଲିପ୍ତଥିବା ଜଣାଯାଏ । ସେ ଶ୍ବେତାମ୍ବର ଜୈନ-ମାନଙ୍କର ପୃଷ୍ଠପୋଷକ ଥିଲେ ଓ ଜୈନ ଆର୍ହତମାନଙ୍କ ପାଇଁ ଉଦୟଗିରି ପାହାଡ଼ ଗାତରେ ବହୁ ଗୁମ୍ଫା ନିର୍ମାଣ କରାଇଥିଲେ । ଏହି ଗୁମ୍ଫାମାନଙ୍କରେ ଭାରତର ବିଭିନ୍ନ ସ୍ଥାନରୁ ଶ୍ରମଣ, ଯତି, ସାଧୁ ଓ ତାପସମାନେ ଆସି ସମବେତ ହେଉଥିଲେ ଓ ଧର୍ମଚର୍ଚ୍ଚା କରୁଥିଲେ । ସେମାନଙ୍କ ରହିବାପାଇଁ ଏଠାରେ ବାସସ୍ଥାନ ପ୍ରସ୍ତୁତ ହୋଇଥିଲା ।

ଜୈନଧର୍ମର ଉନ୍ନତି ବିଧାନ ନିମନ୍ତେ ସମ୍ରାଟ ଖାର-ବେଳଙ୍କ ପୃଷ୍ଠପୋଷକତା ଅବିସ୍ମରଣୀୟ । ଭାରତୀୟ ସଂସ୍କୃତିକୁ ସମ୍ରାଟ ଖାରବେଳଙ୍କ ଏହା ଏକ ଅଦ୍ୱିତୀୟ ଅବଦାନ ।

ଏବେ ମଧ୍ୟ ଓଡ଼ିଶାର ଖଣ୍ଡଗିରି-ଉଦୟଗିରି ଭାରତର ଏକ ସୁ-ପ୍ରସିଦ୍ଧ ଜୈନପୀଠ ରୂପେ ଖ୍ୟାତିଲାଭ କରିଛି । ଏଠାକାର ଜୈନଗୁମ୍ଫାମାନ ଖାରବେଳଙ୍କ ଧର୍ମକାର୍ଯ୍ୟର ମୂକ-ସାକ୍ଷୀ ରୂପେ ତାଙ୍କର ଜୟଗାନ କରି ଚାଲିଛି । ଅତି ପ୍ରାଚୀନ କାଳରୁ କଳିଙ୍ଗ (ଓଡ଼ିଶା) ଜୈନଧର୍ମର ପ୍ରଧାନ ପୀଠଥିବା ଏଥିରୁ ପ୍ରମାଣିତ ।

ହାତୀଗୁମ୍ଫାର ପ୍ରସିଦ୍ଧ ଶିଳାଲିପିରୁ ଖାରବେଳଙ୍କ ସମ୍ପର୍କରେ ବହୁକଥା ଜାଣିହୁଏ । ଏହି ଶିଳାଲେଖର ପ୍ରଥମ ଧାଡ଼ିରେ ଜୈନ ଆର୍ହତ ଓ ସିଦ୍ଧମାନଙ୍କୁ ପ୍ରଣତି ଅର୍ପଣ କରା-ଯାଇଛି । ଏଥିରୁ ପ୍ରତିପାଦିତ ହୁଏ ଯେ, ସମ୍ରାଟ ଖାରବେଳ ଜୈନମାନଙ୍କ ପ୍ରତି ଅତ୍ୟନ୍ତ ବିନମ୍ର ଥିଲେ ଓ ଧର୍ମ ପ୍ରତି ତାଙ୍କର ନିଷ୍ଠା ଥିଲା । ଖାଲି ସେତିକି ନୁହେଁ, ସମ୍ରାଟ ଖାରବେଳ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧ ଅଧିକାର କରି, ସେଠାରୁ 'କଳିଙ୍ଗ-ଜିନ' ମୂର୍ତ୍ତିକୁ ମହାସମାରୋହରେ ନିଜ ରାଜ୍ୟକୁ ଫେରାଇ ଆଣିଥିଲେ । ସେହି ମୂର୍ତ୍ତିକୁ ମଗଧର ଜଣେ ନନ୍ଦରାଜା କଳିଙ୍ଗରୁ ଅପହରଣ କରି ନେଇଥିଲେ ।

ଐତିହାସିକମାନଙ୍କ ମତରେ କଳିଙ୍ଗ ଜିନ ହେଉଛନ୍ତି ଜୈନଧର୍ମର ଆଦିଗୁରୁ ଋଷଭନାଥ ।



# ଉପସଂହାର

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ ଭାରତବର୍ଷ ଇତିହାସରେ ଚିର ସ୍ମରଣୀୟ ସମୟ । ଏହି ଶତାବ୍ଦୀରେ ଭାରତରେ ଇତିହାସ ଯୁଗର ଆରମ୍ଭ ହୋଇଥିଲା । ଏହି ଶତାବ୍ଦୀରେ ଭାରତବର୍ଷରେ ଦୁଇଜଣ ଇତିହାସ ପ୍ରସିଦ୍ଧ ମହାପୁରୁଷ ଜନ୍ମଗ୍ରହଣ କରିଥିଲେ । ସେମାନେ ହେଲେ ମହାବୀର ଜିନ ଓ ଗୌତମ ବୁଦ୍ଧ । ଏ ଦୁହେଁ ଏ ଦେଶର ସାମାଜିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ପ୍ରଧାନ ଭୂମିକା ଗ୍ରହଣ କରି ଯଥାକ୍ରମେ ଜୈନଧର୍ମ ଓ ବୌଦ୍ଧଧର୍ମର ପ୍ରତିଷ୍ଠା କରିଥିଲେ ।

କାରଣ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବୈଦିକ ବ୍ରାହ୍ମଣ୍ୟ ଧର୍ମ ଜଟିଳ ଓ ଦିଗ୍‌ଭ୍ରାନ୍ତ ହୋଇ ଯାଇଥିଲା । ଧର୍ମ ନାମରେ ସର୍ବତ୍ର କୁ-ସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରଚଳିତ ଥିଲା । ଯାଗଯଜ୍ଞ, ପଶୁହତ୍ୟା ଓ ନାନାପ୍ରକାର କର୍ମକାଣ୍ଡ ମଧ୍ୟରେ ଧର୍ମର ମୂଳଲକ୍ଷ୍ୟ ବ୍ୟାହତ ହୋଇଥିଲା । ଅସଂଖ୍ୟ ପଶୁବଳି ଓ ସ୍ଥାନେ ସ୍ଥାନେ ନରବଳିର ଆୟୋଜନ କରାଯାଇ ଧର୍ମ ନାମରେ ଜୀବହିଂସା କରା ଯାଉଥିଲା । ଧର୍ମକାର୍ଯ୍ୟକୁ ଜଟିଳ କରାଯାଇ ପୁରୋହିତ-ମାନଙ୍କ ହାତରେ ପୂଜାପାଠ ଠେକା ଦିଆଗଲା । ଆଗରୁ ଥିବା ଜାତିଜାତି ଅନେକ ଉପଜାତିରେ ବିଭକ୍ତ ହୋଇଥିଲେ । ଉଚ୍ଚ ଜାତିର ଲୋକେ ନୀଚ ଜାତିର ଲୋକଙ୍କୁ ଘୃଣା କରୁଥିଲେ । ଜାତିପ୍ରଥା ନିଷ୍ଠୁର ନିୟମରେ ପରିଣତ ହୋଇଥିଲା । ଲୋକେ ଧର୍ମଚ୍ୟୁତ ଓ ନୀତିଚ୍ୟୁତ ହୋଇ ପଡ଼ିଥିଲେ ।

ଧର୍ମ ଓ ସମାଜର ଏ ପ୍ରକାର ଅଧୋଗତିବେଳେ ସଂସ୍କାର ପାଇଁ ଜନସମାଜରେ ଆଲୋଡ଼ନ ଓ ଆନ୍ଦୋଳନ ଆରମ୍ଭ ହେଲା । ସେହି ସଂସ୍କାରମୁଖୀ ଆଲୋଡ଼ନ ଓ ଆନ୍ଦୋଳନରୁ ଜୈନଧର୍ମ ଓ ପରେ ବୌଦ୍ଧଧର୍ମର ଅଭ୍ୟୁଦୟ ଘଟିଥିଲା ।

ବୈଦିକ ଧର୍ମର ଯୁକ୍ତିହୀନ କର୍ମକାଣ୍ଡ ଓ ସାମାଜିକ ଭେଦଭାବର ପ୍ରତିକ୍ରିୟା ରୂପେ ଏହି ଦୁଇଧର୍ମ ଅହିଂସା, ସାମ୍ୟ ଓ ନୈତିକତା ଉପରେ ଗୁରୁତ୍ୱ ଆରୋପ କରିଥିଲା ।

ଜୈନଧର୍ମ ଓ ବୌଦ୍ଧଧର୍ମ ଭାରତରେ ଉତ୍ପତ୍ତି ଲାଭ କରିଥିବାରୁ ହିନ୍ଦୁଧର୍ମର ପ୍ରଭାବରୁ ପୂରାପୂରି ମୁକ୍ତହୋଇ ପାରିଲା ନାହିଁ ।

## ଜୈନଧର୍ମର ପୃଷ୍ଠପୋଷକତା

ଭାରତୀୟ ସମ୍ରାଟମାନଙ୍କ ମଧ୍ୟରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଶେଷ ବୟସରେ ଜୈଧନଧର୍ମ ଗ୍ରହଣ କରି ଏ ଧର୍ମର ପୃଷ୍ଠ-ପୋଷକତା କରିଥିଲେ ବୋଲି କିମ୍ବଦନ୍ତୀରୁ ଜଣାଯାଏ ।

କଳିଙ୍ଗ ସମ୍ରାଟ ଖାରବେଳ ଜୈନଧର୍ମାବଲମ୍ବୀ ଥିଲେ । ସେ ଜୈନଧର୍ମର ଉନ୍ନତି, ପ୍ରଚାର ଓ ପ୍ରସାର ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ ।

ଜୈନସାଧୁ, ସନ୍ନ୍ୟାସୀ, ଉପାଧ୍ୟାୟ ଓ ତାପସମାନେ ଏ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ନିଷ୍ଠାପର ଉଦ୍ୟମ କରିଥିଲେ ।

# ଜୈନଧର୍ମର ଅବଦାନ

ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ କଳାକ୍ଷେତ୍ରରେ ଜୈନଧର୍ମର ଅବଦାନ ସାମାନ୍ୟ ନୁହେଁ ।

ଓଡ଼ିଶାର ଖଣ୍ଡଗିରି ଓ ଉଦୟଗିରିର ଜୈନଗୁମ୍ଫା-ମାନଙ୍କରେ ଜୈନମାନଙ୍କର ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ କଳାର ନିଦର୍ଶନ ମିଳିଥାଏ । ଏତଦ୍‌ବ୍ୟତୀତ 'ଏଲୋରା' ଓ ଜୁନାଗଡ଼ର ଜୈନମନ୍ଦିର ତଥା ରାଜପୁତନାର 'ଆବୁ' ପର୍ବତ ଜୈନ-ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ମୂକସାକ୍ଷୀ ।

ଚିତ୍ରଶିଳ୍ପରେ ଜୈନମାନେ ଅପୂର୍ବ ଦକ୍ଷତା ଦେଖାଇ-ଥିଲେ । କାଗଜ ଉପରେ ଚିତ୍ରାଙ୍କନ କରିବା କ୍ଷେତ୍ରରେ ଏମାନେ ଅଗ୍ରଣୀ ଥିଲେ ।

ମହାବୀରଙ୍କ ଜୀବିତାବସ୍ଥାରେ ଜୈନଧର୍ମ ଭାରତର ଜନସାଧାରଣଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରିୟ ଥିଲା । ସେ ମଗଧ ଓ କୋଶଳ ଖଣ୍ଡରେ ନିଜ ଧର୍ମ ପ୍ରଚାର କରିଥିଲେ ।

## କଳିଙ୍ଗ ଜିନ

ମଗଧ ରାଜା ଅଜାତଶତ୍ରୁଙ୍କ ପୁତ୍ର ଜୈନଧର୍ମ ଗ୍ରହଣ କରିଥିଲେ । ମହାପଦ୍ମ ନନ୍ଦ କଳିଙ୍ଗ ଜୟକରି 'କଳିଙ୍ଗ ଜିନ' ମୂର୍ତ୍ତିକୁ ପାଟଳୀପୁତ୍ର ନେଇ ଯାଇଥିଲେ । ଖାରବେଳ ମଗଧ ଜୟକରି 'କଳିଙ୍ଗ ଜିନ' ମୂର୍ତ୍ତିକୁ କଳିଙ୍ଗକୁ ଫେରାଇ ଆଣିଥିଲେ ।

## ଜୈନ ମହାସଭା

ଜୈନଧର୍ମର ଉନ୍ନତି, ପ୍ରଚାର ଓ ପ୍ରସାର ପାଇଁ ଜୈନ-ସଙ୍ଗଠନମାନ ଗଠିତ ହୋଇ ପାଟଳୀପୁତ୍ର, ମଥୁରା ଓ. ବଲ୍ଲଭୀ-ଠାରେ ମହା ସଭାମାନ ଆହୂତ ହୋଇଥିବା ଜଣାଯାଏ ।

ବହୁଗ୍ରନ୍ଥ ସଂକଳିତ ହୋଇ ସେଗୁଡ଼ିକର ପଠନ ଓ ସମୀକ୍ଷାମାନ କରାଯାଇଥିଲା ।

## ଜୈନଧର୍ମ ପ୍ରସାର

ଜୈନଧର୍ମ ପ୍ରଥମେ ପୂର୍ବ ଭାରତରେ ପ୍ରବଳ ଭାବରେ ପ୍ରସାର ଲାଭ କରିବା ପରେ, ପରବର୍ତ୍ତୀ କାଳରେ ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ପ୍ରସାରିତ ହେଲା ।

ପରେଶନାଥ, ରାଜଗିରି, ଖଣ୍ଡଗିରି, ଆବୁ ପ୍ରଭୃତି ସ୍ଥାନ ଜୈନମାନଙ୍କର ତୀର୍ଥଭୂମିରେ ପରିଣତ ହୋଇଥିଲା । ଅନ୍ୟ ଧର୍ମମାନଙ୍କ ସହିତ ସମାନ ତାଳଦେଇ ଏହି ଧର୍ମ ଭାରତବର୍ଷରେ ତିଷ୍ଠି ରହିଥିଲା ।

## ଜୈନଧର୍ମର ଅବନତିର କାରଣ

ମଧ୍ୟଯୁଗର ଶେଷଆଡ଼କୁ, ହିନ୍ଦୁ ଶୈବଧର୍ମର ତାଡ଼ନାରେ ଜୈନଧର୍ମର ପ୍ରାଧାନ୍ୟ ଦକ୍ଷିଣ ଭାରତରୁ କମିଗଲା ।

ଜୈନଧର୍ମାବଲମ୍ବୀମାନେ କାଳକ୍ରମେ ଜନସମାଜରୁ ଦୂରେଇଯାଇ ବଣଜଙ୍ଗଲ, ପାହାଡ଼ ପର୍ବତର ନିମ୍ନଦେଶରେ

ବାସ କରିବାକୁ ଲାଗିଲେ । ସେମାନେ ନିଜ ମଧ୍ୟରେ ସ୍ୱଧର୍ମର ସ୍ୱାତନ୍ତ୍ର୍ୟ ବଂଚାଇ ରଖିଲେ ।

ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ ଯେ, ଜୈନଧର୍ମ ଭାରତର ଗଣଧର୍ମରେ କେବେହେଲେ ପରିଣତ ହୋଇ ନ ଥିଲା କି ଏହି ଧର୍ମ ହିନ୍ଦୁଧର୍ମ ସଙ୍ଗରେ କେବେହେଲେ ପ୍ରତିଦ୍ୱନ୍ଦ୍ୱିତା କରି ନ ଥିଲା ।

କାଳକ୍ରମେ ଜୈନମାନେ କେତେକ ହିନ୍ଦୁ ଦେବଦେବୀଙ୍କୁ ଗ୍ରହଣ କରି ନେଇଥିଲେ ଓ ଧର୍ମ କାର୍ଯ୍ୟରେ ବ୍ରାହ୍ମଣ ପୁରୋହିତ-ମାନଙ୍କୁ ନିଯୁକ୍ତ କରିଥିଲେ । ଶ୍ୱେତାମ୍ବର ଜୈନମାନେ ହିନ୍ଦୁ-ପୂଜା ପଦ୍ଧତି ଅନୁସରଣ କରି ଜିନମାନଙ୍କର ପୂଜା ଆରାଧନା କରିବା ଆରମ୍ଭ କରିଥିଲେ ।

ଜୈନଧର୍ମର କଠୋର ନୀତିନିୟମ ଏହାର ପ୍ରସାର ଘଟାଇବାରେ ଅସମର୍ଥ ହେଲା । ଜନସାଧାରଣ କଠୋର ନୀତି ନିୟମକୁ ଦେଖି ଭୟକଲେ ଓ ଏଥିପ୍ରତି ଆକୃଷ୍ଟ ହେଲେନାହିଁ ।

ଏସବୁ ସତ୍ତ୍ୱେ, ଏହି ଧର୍ମ ମୂଳରେ ଚିରନ୍ତନ ସତ୍ୟ ନିହିତ ଥିବାରୁ ଏହାର ସମୂଳ ବିନାଶ କଦାପି ସମ୍ଭବ ନୁହେଁ ।

ଅଧୁନା ଭାରତବର୍ଷରେ ଜୈନଧର୍ମାବଲମ୍ବୀମାନଙ୍କ ସଂଖ୍ୟା ବୌଦ୍ଧଧର୍ମାବଲମ୍ବୀମାନଙ୍କଠାରୁ ଅଧିକ ଥିବା ଜଣାଯାଏ ।

